ସମ୍ପୂର୍ଣ୍ଣ

# ଭୃଙ୍ଗୀ ଦଶାବଳୀ

କବି ସୂର୍ଯ୍ୟମଣି ଉପାଧ୍ୟ ପଟ୍ଟନାୟକ

ସମ୍ପାଦକ : ଶ୍ରୀ ଦୁର୍ଗାମାଧବ ନନ୍ଦ, ଏମ୍. ଏ.

ପ୍ରକାଶକ —
ମହନ୍ତ ମହାରାଜ ଶ୍ରୀ ବଂଶୀଧର ଆଚାର୍ଯ୍ୟ
ଓଡ଼ିଆ ବାବା ସ୍ଥାନ, ମହଲ୍ଲା ରାମକୋଟ, ଅଯୋଧ୍ୟା
( ଜି, ଫଇଜାବାଦ )

# ଗୁମୁସର ଭଞ୍ଜ ବଂଶାବଳୀ

କବି ସୂର୍ଯ୍ୟମଣି ଚ୍ୟାଉ ପଟ୍ଟନାୟକ

ସଂଗ୍ରାହକ : ଶ୍ରୀ ଦୁର୍ଗାମାଧବ ନନ୍ଦ, ଏମ୍. ଏ

ସ୍ୱତ୍ୱାଧିକାରୀ : ମହନ୍ତ ମହାରାଜ ଶ୍ରୀ ବଂଶୀଧର ଆଚାର୍ଯ୍ୟ

ପ୍ରକାଶ କାଳ — ମାର୍ଚ୍ଚ, ୧୯୭୩
ପ୍ରତି ୧୦୦୦

ମୁଦ୍ରାକର —
ଶ୍ରୀ ରାମଚରଣ ପାଢ଼ୀ
ସ୍ୱାଧୀନ ପ୍ରେସ୍
ବ୍ରହ୍ମପୁର

ମୂଲ୍ୟ — ଟ ୩/

**GUMUSAR BHANJA BANSABALI**

Kabi Suryamani Chawoo Patnaik

Compiler :
Sri Durgamadhaba Nanda, M. A.

First impression
March, 1973
1000 Copies

Printer :
Sri Ramacharan Padhi
Swadheen Press
Berhampur (Ganjam)

Price Rs. 3/-



ଜୟ ଜୟ ଜୟ ରାମ ଜନକ ସୁଖଦ
ଭୀମ ହରଷ ଦାନରେ ସଦା ବିଶାରଦ ।

ଶ୍ରୀରାମଙ୍କ ପବିତ୍ର ନାମରେ
ଉତ୍ସର୍ଗୀକୃତ

# ଗ୍ରନ୍ଥ ସମ୍ପର୍କରେ ପଦେ-ଅଧେ

ସେଦିନ ଥିଲା ଫେବୃୟାରୀ କୋଡ଼ିଏ ତାରିଖର ଏକ ଧୂସର ଅପରାହ୍ନ । ଅପ୍ରକାଶିତ ଉପେନ୍ଦ୍ର କାବ୍ୟ କବିତା ସମ୍ପର୍କରେ ଅନ୍ୱେଷଣ ତଥା କିଛି ଆଲୋଚନା କରିବା ପାଇଁ ମୁଁ ବୁଗୁଡ଼ା ବିରଞ୍ଚିନାରାୟଣ ମନ୍ଦିରରେ ପ୍ରବେଶ କରେ । ଭଞ୍ଜବଂଶର ଶେଷ ଅବତଂସ ପୁଣ୍ୟଶ୍ଳୋକ ମହାରାଜା ଶ୍ରୀକର ଭଞ୍ଜଙ୍କ ନିର୍ମିତ ମଣ୍ଡପରେ ବସି ଐତିହାସିକ "ମାରଦା ଦେଉଳ" ସମ୍ପର୍କରେ ଆଲୋଚନା କରିବା ସମୟରେ ପରିଚୟ ହୁଏ, ବାବନପୁର ଭଞ୍ଜ ସାହିତ୍ୟ ପ୍ରଚାର ସମିତିର ତତ୍ତ୍ୱାବଧାରକ ଶ୍ରୀ ଶ୍ରୀ ବଂଶୀଧର ଆଚାର୍ଯ୍ୟ ମହନ୍ତ ମହାରାଜାଙ୍କ ସହିତ । ସେତେବେଳକୁ 'ମୋର "ବିରଞ୍ଚିନାରାୟଣ ଓ ସୂର୍ଯ୍ୟ ଉପାସନା" ଶୀର୍ଷକ ଏକ ପ୍ରବନ୍ଧ ପ୍ରକାଶ ପାଇଥାଏ । କଥା ପ୍ରସଙ୍ଗରେ ମୁଁ 'ଅଧ୍ୟାତ୍ମ ରାମାୟଣ' ରଚୟିତା ସୂର୍ଯ୍ୟମଣି ଚମ୍ପତି ପଟ୍ଟନାୟକଙ୍କ ଅପ୍ରକାଶିତ "ଭଞ୍ଜ ବଂଶାବଳୀ" ଗ୍ରନ୍ଥ ସମ୍ପର୍କରେ ଉକ୍ତ ମହାତ୍ମାଙ୍କୁ କହିଲି । ସେ ସଙ୍ଗେ ସଙ୍ଗେ ଉକ୍ତ ଗ୍ରନ୍ଥର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିବେ ବୋଲି ପ୍ରତିଶ୍ରୁତି ଦେଲେ । ମୁଁ ମଧ୍ୟ ଅତିଶୟ ଆନନ୍ଦରେ ସଂକଳନ ଦାୟିତ୍ୱ ଗ୍ରହଣ କରିବା ପାଇଁ ସ୍ୱୀକାର କଲି । କିନ୍ତୁ ଏ ମଧ୍ୟରେ ଅନ୍ୟ ଜଣେ ମହାତ୍ମାଙ୍କର ଭୂମିକା ଯଥେଷ୍ଟ ରହିଛି । ସେ ହେଉଛନ୍ତି ବୁଗୁଡ଼ା ବିରଞ୍ଚିନାରାୟଣ ମଠାଧୀଶ ଶ୍ରୀ ଶ୍ରୀ ରଘୁବର ରାମାନୁଜ ଦାସ । ଉକ୍ତ ମହାଶୟ ବହୁଦିନରୁ ଆଲୋଚ୍ୟ ଗ୍ରନ୍ଥର ଅପ୍ରକାଶିତ ପାଣ୍ଡୁଲିପିକୁ ସଂଗ୍ରହ କରି ରଖିଥିଲେ । ତାଙ୍କର ସାହାଯ୍ୟ ତଥା ଉପକାରକୁ ଭୁଲିବାର ନୁହେଁ । ସୁତରାଂ ସେହି ଦୁଇଜଣ ସାହିତ୍ୟପ୍ରେମୀ ସାଧୁ ମହାତ୍ମାଙ୍କ ନିକଟରେ ମୁଁ ଚିର କୃତଜ୍ଞ ।

ମୋର ପୂଜ୍ୟ ଗୁରୁଦେବ ଅଧ୍ୟାପକ ଡକ୍ଟର ଶ୍ରୀ ବେଣୀମାଧବ ପାଢ଼ୀ ନିଜର ଶାରୀରିକ ଅସୁସ୍ଥତା ସତ୍ତ୍ୱେ ଏହି ଗ୍ରନ୍ଥ ସଂକଳନ କରିବାରେ ଯଥେଷ୍ଟ ପରାମର୍ଶ ଓ ପ୍ରେରଣା ଦେବା ସଙ୍ଗେ ସଙ୍ଗେ ଅମୂଲ୍ୟ ସମୟ ନଷ୍ଟକରି ନିଜର ଅଭିମତ ପ୍ରଦାନ କରିଥିବା ହେତୁ ମୁଁ ତାଙ୍କ ନିକଟରେ ଆଜୀବନ ଋଣୀ ରହିଲି । ପୂଜ୍ୟ ଗୁରୁଦେବ ଅଧ୍ୟାପକ ଶ୍ରୀ ସୁଦର୍ଶନ ଆଚାର୍ଯ୍ୟ, ଅଧ୍ୟାପକ ଶ୍ରୀ ସୀତାରାମ ମହାପାତ୍ର, ଅଧ୍ୟାପକ ଶ୍ରୀ ଲକ୍ଷ୍ମଣକୁମାର ପରିଡ଼ା, ଅଧ୍ୟାପକ ଶ୍ରୀ ବାସୁଦେବ ପାଠୀଙ୍କ ଆଶୀର୍ବାଦ ତଥା ଉତ୍ସାହ ମତେ ବହି ପ୍ରକାଶନ ଦିଗରେ ବହୁଦୂର ଆଗେଇ ନେଇଛି । ପିତାମାତାଙ୍କର ଆଶୀର୍ବାଦ, ଓଡ଼ିଶା

ବୁକ୍ ହାଉସର ଦୁଇଜଣ ପରିଚାଳକ ଶ୍ରୀ ପ୍ରଫୁଲ୍ଲକୁମାର ପାତ୍ରୀ ଓ ଶ୍ରୀ ପ୍ରହ୍ଲାଦ ପାଣିଗ୍ରାହୀଙ୍କ ସାହାଯ୍ୟ, ଶୁଭାକାଂକ୍ଷୀ ଶ୍ରୀ ଅନନ୍ତ ପଦ୍ମନାଭ ପଟ୍ଟନାୟକ, ଶ୍ରୀ ଶକ୍ତିଭୂଷଣ ସାମଲ, ଶ୍ରୀ ଶିରୀଷଚନ୍ଦ୍ର ବୋଷ, ଶ୍ରୀ ପ୍ରେମାନନ୍ଦ ପାଢ (ସ୍କୁଲ୍ ପାଠଶା), ଶ୍ରୀ ଗୋପାଳଚନ୍ଦ୍ର ରଥ (ଆସେସୁ) ଆଦିଙ୍କ ଶୁଭେଚ୍ଛା ଅବିସ୍ମରଣୀୟ । ବନ୍ଧୁ ଗବେଷକ ଶ୍ରୀ ରମେଶଚରଣ ତ୍ରିପାଠୀ, ଅଧ୍ୟାପକ ରଜନୀକାନ୍ତ ସାମଲ, ଶ୍ରୀ ସୁବାସଚନ୍ଦ୍ର ଜେନା ଓ ଶ୍ରୀ ଲଳିତମୋହନ ଦାସ (ସଂପାଦକ, ଭଞ୍ଜ ସାହିତ୍ୟ ପ୍ରଚାର ସମିତି) ଓ ଶ୍ରୀ ଶ୍ରୀନିବାସ ରଥଙ୍କ ପ୍ରୋତ୍ସାହନ ଭୁଲିବାର ନୁହେଁ । ବିଶେଷତଃ ଭଉଣୀ ଚିନ୍ନାର ସାହାଯ୍ୟ, ପ୍ରେରଣା ଓ ପୁସ୍ତକ ପ୍ରକାଶନ ପାଇଁ ତାର ବ୍ୟାକୁଳତା ମତେ ଏହି ପଥରେ ଯଥେଷ୍ଟ ଆଗେଇ ପାରିଛି । ସୁତରାଂ ତାକୁ ଜୀବନରେ ଭୁଲିବାର ନୁହେଁ । ଜଗନ୍ନାଥେ ତାର ମଙ୍ଗଳ କରନ୍ତୁ ।

ସ୍ୱାଧୀନ ପ୍ରେସର ମ୍ୟାନେଜର ଶ୍ରୀ ଅଭିମନ୍ୟୁ ପାତ୍ରୀ ଓ ତାଙ୍କର ସହକର୍ମୀମାନଙ୍କ ପ୍ରଗାଢ଼ ଉଦ୍ୟମରେ ଗ୍ରନ୍ଥଟି ଶୀଘ୍ର ପ୍ରକାଶ ପାଇପାରିଛି । ତେଣୁ ଏହି ଅବସରରେ ସେମାନଙ୍କୁ ଧନ୍ୟବାଦ ଅର୍ପଣ କରୁଛି ।

ପୂର୍ଣ୍ଣାଙ୍ଗ ଓଡ଼ିଶା ଇତିହାସ ରଚନା କରିବା ଦିଗରେ ଆଲୋଚ୍ୟ ଗ୍ରନ୍ଥଟି ଗବେଷକ ଓ ଐତିହାସିକମାନଙ୍କୁ ଯଥେଷ୍ଟ ଖାଦ୍ୟ ଯୋଗାଇପାରିବ ବୋଲି ଆଶା ଓ ଦୃଢ଼ ବିଶ୍ୱାସ ।

ଦୋଳପୂର୍ଣ୍ଣିମା
ବ୍ରହ୍ମପୁର (ଗଞ୍ଜାମ) } ଶ୍ରୀ ଦୁର୍ଗାମାଧବ ନନ୍ଦ

# ଅଭିମତ

କଲ୍ୟାଣୀୟ ଦୁର୍ଗାମାଧବ ନନ୍ଦଙ୍କଦ୍ୱାରା ସମ୍ପାଦିତ 'ଭଞ୍ଜ ବଂଶାବଳୀ' ଗ୍ରନ୍ଥଟି ଦେଖିଲି । ଗ୍ରନ୍ଥଟିରେ ଘୁମୁସର ରାଜବଂଶ ସମ୍ବନ୍ଧରେ ବହୁତ କଥା କୁହାଯାଇଅଛି । ଅବଶ୍ୟ ଏଥିପୂର୍ବେ ପଣ୍ଡିତ ତାରିଣୀଚରଣ ରଥ ଓ ଶ୍ରୀ ଅନନ୍ତପଦ୍ମନାଭ ପଟ୍ଟନାୟକ ଭଞ୍ଜବଂଶର ପରମ୍ପରା ବିଷୟରେ ବିବରଣୀମାନ ପ୍ରଦାନ କରିଯାଇଛନ୍ତି । କିନ୍ତୁ ସେଗୁଡ଼ିକ ଏକପାର୍ଶ୍ୱିକ ହୋଇଥିବାରୁ ଭଞ୍ଜ ଗବେଷକମାନଙ୍କ ପକ୍ଷେ ଅସୁବିଧାର ସମ୍ମୁଖୀନ ହେବା ଦେଖାଯାଏ । ବର୍ତ୍ତମାନ ଶ୍ରୀ ନନ୍ଦ ଆଉ ଏକ ପ୍ରାମାଣିକ ବିବରଣୀ ସଂଗ୍ରହ କରି ପ୍ରକାଶ କରିବାଦ୍ୱାରା ସେହି ଅଭାବ ଅନେକାଂଶ ପୂରଣ ହୋଇପାରିଥିବା ମନେହୁଏ ।

ପ୍ରାଚୀନ ଗ୍ରନ୍ଥ ସଂଗ୍ରହ କରିବା ଓ ତାର ସମ୍ପାଦନ ଦାୟିତ୍ୱ ଗ୍ରହଣ କରିବା କମ୍ କଷ୍ଟସାଧ୍ୟ ନୁହେଁ । ଯେଉଁମାନେ ଭଞ୍ଜଙ୍କ ନାଁ ଧରି ବଡ଼ ବଡ଼ ଦମ୍ଭ ତୋଫାନ କରନ୍ତି ସେମାନେ ଯେତେବେଳେ ସବୁପ୍ରକାର ସୁବିଧା ସତ୍ତ୍ୱ ଭଞ୍ଜଙ୍କ ସମ୍ବନ୍ଧରେ କୌଣସି ଆଖିଦୃଶିଆ କାର୍ଯ୍ୟ କରୁନାହାନ୍ତି, ସେତିକିବେଳେ ଜଣେ ସଦ୍ୟ ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ କିଆ ଯୁବକ ଯେଉଁ ନିଷ୍ଠାପର ପରିଶ୍ରମପୂର୍ବକ ଭଂଜ ସମ୍ବନ୍ଧୀ ଗ୍ରନ୍ଥର ସଂଗ୍ରହ, ସମ୍ପାଦନା ଓ ପ୍ରକାଶନ ଭାର ସବୁ ଏକା କାନ୍ଧରେ ବହନ କରିବା କେତେଦୂର ଦୁରୂହ ବ୍ୟାପାର, ବିଚାର କରିବା କଥା । ଅବଶ୍ୟ କେତେ ବଦାନ୍ୟ ବ୍ୟକ୍ତିଙ୍କଠାରୁ ସେ ସାହାଯ୍ୟପ୍ରାପ୍ତ ହୋଇ ଏହା କରିବାକୁ ଯାଇଛନ୍ତି; କିନ୍ତୁ ସେତିକି ବା କ'ଣ ସହଜ କଥା ! ଏଣୁ ମୁଁ ଶ୍ରୀ ନନ୍ଦଙ୍କୁ ମୋର ହାର୍ଦ୍ଦିକ ଆଶୀର୍ବାଦ ଜଣାଉଛି ଏବଂ ଭବିଷ୍ୟତରେ ମଧ୍ୟ ଲୁପ୍ତ ପ୍ରାଚୀନ ଗ୍ରନ୍ଥୋଦ୍ଧାର କାର୍ଯ୍ୟରେ ନିଜକୁ ନିୟୋଜିତ କରି ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି କରିବେ ବୋଲି ଦୃଢ଼ ବିଶ୍ୱାସ ରଖିଛି । ଗ୍ରନ୍ଥଟି ଭଞ୍ଜ ଗବେଷକଙ୍କ ପକ୍ଷେ ଅତ୍ୟନ୍ତ ଉପଯୋଗୀ ଏହା ନିଃସନ୍ଦେହ । ଜଗନ୍ନାଥ କରନ୍ତୁ, ତାଙ୍କ ସଦୁଦ୍ୟମ ସଫଳ ହେଉ ।

ବ୍ରହ୍ମପୁର
୬-୪-୧୯୭୩

**ଅଧ୍ୟାପକ ଡକ୍ଟର ବେଣୀମାଧବ ପାଢ଼ୀ**
ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

•

# ଭଞ୍ଜ ସାହିତ୍ୟ ପ୍ରଚାର ସମିତି

## ବାବନପୁର (ଗଞ୍ଜାମ)

୧୯୬୧ ମସିହାର କେଉଁ ଏକ ଶୁଭ ମୁହୂର୍ତ୍ତରେ ଭଞ୍ଜ ସାହିତ୍ୟ ପ୍ରଚାର ସମିତିର କାର୍ଯ୍ୟ ଆରମ୍ଭ ହୁଏ । ସେହିଦିନଠାରୁ ଉକ୍ତ ସାହିତ୍ୟ ଅନୁଷ୍ଠାନ ଗୁମୁସର ଭଞ୍ଜବଂଶ ଓ ଉପେନ୍ଦ୍ର ସାହିତ୍ୟ ସମ୍ପର୍କରେ ଆରମ୍ଭ କରେ ତାର ଗବେଷଣା । ସମୟାନୁକ୍ରମେ ପ୍ରତିଷ୍ଠିତ ବର୍ଷରେ ହିଁ ଏହି ପ୍ରଚାର ସମିତି ସହିତ ପରିଚୟ ହୁଏ ମହନ୍ତ ମହାରାଜ ଶ୍ରୀ ଶ୍ରୀ ବଂଶୀଧର ଆଚାର୍ଯ୍ୟଙ୍କ ସହିତ । ଶ୍ରୀ ବଂଶୀଧର ଆଚାର୍ଯ୍ୟଙ୍କ ପୀଠସ୍ଥଳୀ ଅଯୋଧ୍ୟା । ସେହି ମହାତ୍ମା ବାଲ୍ୟାବସ୍ଥାରୁ ତ୍ୟାଗୀ ଓ ବୈଷ୍ଣବ ହୋଇ ଭାରତର ସମସ୍ତ ତୀର୍ଥସ୍ଥଳୀ ଭ୍ରମଣ କରି ଅଯୋଧ୍ୟାରେ ନିଜର ପୀଠ ସ୍ଥାପନ କରନ୍ତି । କାଶୀ ଗୋୟନକା ସଂସ୍କୃତ ମହାବିଦ୍ୟାଳୟରେ ଅଧ୍ୟୟନ କରିସାରିବା ପରେ ତୁଳସୀକୃତ 'ଶ୍ରୀରାମଚରିତ ମାନସ' ଉପରେ ତାଙ୍କର ଗବେଷଣା ଆରମ୍ଭ ହୁଏ । 'ରାମଚରିତ ମାନସ'ର ଜଣେ ପ୍ରଧାନ ବକ୍ତାଭାବରେ ଉତ୍ତରପ୍ରଦେଶରେ ସେ ବିଶେଷ ଖ୍ୟାତି ଅର୍ଜନ କରନ୍ତି । ୧୯୬୨ ମସିହାରେ ଗୁମୁସର ଆସି ସେ ଭଞ୍ଜ ସାହିତ୍ୟ ସମ୍ପର୍କରେ ଗୁମୁସରର ପୁରପଲ୍ଲୀରେ ଅନ୍ୱେଷଣ କରନ୍ତି ଓ ବାବନପୁରଠାରେ ଅପୂର୍ଣ୍ଣ ହୋଇ ରହିଥିବା ଶ୍ରୀ ବାସୁଦେବ ମନ୍ଦିର ପୂର୍ଣ୍ଣାଙ୍ଗ କରି ଜଣେ କାର୍ଯ୍ୟକର୍ତ୍ତା ଭାବେ ସମସ୍ତ ଭାର ବହନ କରନ୍ତି । ପ୍ରକାଶଥାଉକି ଉକ୍ତ ବାସୁଦେବ ମନ୍ଦିର ଭଞ୍ଜ-ବଂଶର ଶ୍ରେଷ୍ଠ ନରପତି ମହାରାଜା ଶ୍ରୀକୃଷ୍ଣ ଭଞ୍ଜଙ୍କ ଦ୍ୱାରା ପ୍ରାରମ୍ଭ କାର୍ଯ୍ୟ ହୋଇଥିଲେ ସୁଦ୍ଧା ନରପତି ଲକ୍ଷ୍ମଣ ଭଞ୍ଜ ଓ ଶ୍ରୀକର ଭଞ୍ଜଙ୍କ ରାଜତ୍ୱ ସମୟରେ ମଧ୍ୟ ପୂର୍ଣ୍ଣାଙ୍ଗ ହୋଇପାରିନଥିଲା । କିନ୍ତୁ ଉକ୍ତ ମହାତ୍ମାଙ୍କର ଉଦ୍ୟମ, ପ୍ରେରଣା ତଥା ଉତ୍ସାହ ଓ ଗ୍ରାମବାସୀଙ୍କ ଆପ୍ରାଣ ସହଯୋଗରୁ ୧୯୬୨ ମସିହାରେ ଏହି ମନ୍ଦିର ରକ୍ଷମୁଦ ହୋଇ ଆଜି ପୂର୍ଣ୍ଣାଙ୍ଗ ହୋଇପାରିଛି । ତତ୍ ସଙ୍ଗେ ସଙ୍ଗେ ଉକ୍ତ ମନ୍ଦିର 'ଭଞ୍ଜ ସାହିତ୍ୟ ପ୍ରଚାର ସମିତି'ର ହେଉଛି ମୂଳକେନ୍ଦ୍ର । ଏହି ମନ୍ଦିର ନିର୍ମାଣରେ ଯେଉଁ ବ୍ୟକ୍ତିମାନଙ୍କ ବଦାନ୍ୟତା ରହିଛି ସେମାନେ ହେଲେ—ଧରାକୋଟ ରାଜାସାହେବ ଶ୍ରୀ ପଦ୍ମନାଭ ସିଂହଦେଓ, ପୂର୍ବତନ ପଞ୍ଚାୟତିରାଜ ମନ୍ତ୍ରୀ ଶ୍ରୀ ଅନନ୍ତନାରାୟଣ ସିଂହଦେଓ, ଆସିକା କବିରାଜ

ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ, କୁଲଡ଼ ଶ୍ରୀ ପଦ୍ମନାଭ ପଣ୍ଡା, ଶ୍ରୀ ମାଲ ପ୍ରଧାନ ଅର୍ଚ୍ଚକ ଶ୍ରୀ କାଶୀନାଥ ପାଢ଼ୀ, ସ୍ୱର୍ଗୀୟ ଆନନ୍ଦକନ୍ଦ ରାଜୁ, ଭଞ୍ଜନଗର ଶ୍ରୀ ଏ. ଭାସ୍କର ସେନାପତି, ଶ୍ରୀ ପି. ଚନ୍ଦ୍ରଶେଖର ସୁବୁଦ୍ଧି, ବେଲଗୁଣ୍ଠା ସ୍ୱର୍ଗୀୟ ବ୍ରଜବନ୍ଧୁ ତ୍ରିପାଠୀ, ଶ୍ରୀ ବି. ହରିଶ୍ଚନ୍ଦ୍ର ପାତ୍ର, ଶ୍ରୀ ବି. ଜୟ ପାତ୍ର, ବୁଗୁଡ଼ା ମହନ୍ତ ଶ୍ରୀ ରଘୁବର ରାମାନୁଜ ଦାସ, ଓନା ଲକ୍ଷ୍ମୀନାରାୟଣ ପାତ୍ର, ଦ. ପଞ୍ଚୁ ପାତ୍ର, କରଡ଼ାବାଡ଼ି ସର୍ଦ୍ଦାର ଶ୍ରୀ ଅନ୍ତର୍ଯ୍ୟାମୀ ନାୟକ, ଶ୍ରୀ ରାଧା-ମାଧବ ନାୟକ, ଡାକରଡ଼ା ଶ୍ରୀ ଯୋଗୀ ନାୟକ, ପଞ୍ଚୁଭୁତି ଶ୍ରୀ କୁମୁଦ ପଟ୍ଟନାୟକ, ଶ୍ରୀ ଦୋଳଗୋବିନ୍ଦ ପାତ୍ର, ଜଗନ୍ନାଥପ୍ରସାଦ ଶ୍ରୀ ରଘୁନାଥ ମଠ ମହନ୍ତ ମହାରାଜ, ଧୂମ୍ରଗ୍ରାଇ ଶ୍ରୀ ହୃଷୀକେଶ ନାୟକ, ଶ୍ରୀ କୈବଲ୍ୟ ନାୟକ, ଖୋଲ ଶ୍ରୀ ରଘୁନାଥ ପାଢ଼ୀ ଓ ଶ୍ରୀ ରଙ୍କ ପାଢ଼ୀ।

ବର୍ତ୍ତମାନ ଏହି ଅନୁଷ୍ଠାନର ପ୍ରଥମ ପ୍ରକାଶ ହୁଏ କବି ସୂର୍ଯ୍ୟମଣି ଚମ୍ପତି ପଟ୍ଟନାୟକଙ୍କ 'ଗୁମୁସର ଭଞ୍ଜ ବଂଶାବଳୀ'। ଏଥିପାଇଁ ପ୍ରକାଶକ ଶ୍ରୀ ମହନ୍ତ ମହାରାଜ ଏବଂ ସମ୍ପାଦକ ଶ୍ରୀ ଦୁର୍ଗାମାଧବ ନନ୍ଦ, ଏମ୍. ଏ.ଙ୍କ ଅବଦାନକୁ ଭୁଲିବାର ନୁହେଁ। ଶ୍ରୀ ଦୁର୍ଗାମାଧବ ନନ୍ଦ ଯେଉଁ କଷ୍ଟ ସ୍ୱୀକାର କରିଛନ୍ତି ସେଥିପାଇଁ ତାଙ୍କୁ ଏହି ସମିତି ତରଫରୁ ଧନ୍ୟବାଦ ଅର୍ପଣ କରୁଛୁ। ଯାହା ହେଉ ଉକ୍ତ ଗ୍ରନ୍ଥଟି ଅତ୍ୟନ୍ତ ଉଚ୍ଚକୋଟୀର ଓ ଏହା ବହୁ ଭଞ୍ଜ ସାହିତ୍ୟ ପ୍ରେମୀ ତଥା ଗବେଷକମାନଙ୍କର ଏକ ପ୍ରକାର ଅଭାବ ପୂରଣ କରିବା ସଙ୍ଗେ ସଙ୍ଗେ ଗୁମୁସର ଇତିହାସ ସମ୍ପର୍କରେ ବହୁ ତଥ୍ୟ ଯୋଗାଇ ପାରିବ।

ବାବନପୁର (ଗଞ୍ଜାମ)
ତା ୧-୪-୧୯୭୩

**ଶ୍ରୀ ଲଳିତମୋହନ ଦାସ**
ସମ୍ପାଦକ, ଭଞ୍ଜସାହିତ୍ୟ ପ୍ରଚାର ସମିତି

# ମୁଖବନ୍ଧ

## ଗ୍ରନ୍ଥପ୍ରାପ୍ତି :

ପୂର୍ବରୁ କବି ସୂର୍ଯ୍ୟମଣି ରାଉତ ପଟ୍ଟନାୟକଙ୍କ ଲିଖିତ 'ଭଞ୍ଜ ବଂଶାବଳୀ'ର ନାମ ହିଁ ଶୁଣାଯାଉଥିଲା । ଐତିହାସିକ ଶ୍ରୀ ତାରଣୀଚରଣ ଓ କାବ୍ୟକାର ଶ୍ରୀ ଚନ୍ଦ୍ରମଣି ମହାନ୍ତି ଉଭୟେ ଚଉଦ ଅକ୍ଷରୀ ଭଞ୍ଜ ବଂଶାବଳୀକୁ ଆଧାର କରି ନିଜ ନିଜର ଗ୍ରନ୍ଥମାନ ପ୍ରଣୟନ କରିଥିଲେ । ମାତ୍ର ସର୍ବପ୍ରଥମେ ଭଞ୍ଜ ସାହିତ୍ୟର ଅନ୍ୟତମ ଆଲୋଚକ ଶ୍ରୀ ଅନନ୍ତପଦ୍ମନାଭ ପଟ୍ଟନାୟକଙ୍କ "କବିସମ୍ରାଟ ଉପେନ୍ଦ୍ର ଭଞ୍ଜ" (ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା, ୧୯୫୯ ମସିହାରେ ପ୍ରକାଶିତ) ଶୀର୍ଷକ ଗ୍ରନ୍ଥର ୨୭୫ ପୃଷ୍ଠାରେ ଉକ୍ତ ଗ୍ରନ୍ଥର ନାମୋଲ୍ଲେଖ ହିଁ ଦେଖିବାକୁ ମିଳେ । ୧୯୫୯ ଖ୍ରୀଷ୍ଟାବ୍ଦ ପୂର୍ବରୁ ବା ବର୍ତ୍ତମାନ ପର୍ଯ୍ୟନ୍ତ ଏହି ଗ୍ରନ୍ଥର ପ୍ରକାଶ ହୋଇପାରି ନାହିଁ । ଦୀର୍ଘ ଦୁଇ ବର୍ଷ ଧରି ଅପ୍ରକାଶିତ ଉପେନ୍ଦ୍ର କାବ୍ୟ ସମ୍ପର୍କରେ ଗୁମୁସରର ପ୍ରତିଟି ପୁରପଲ୍ଲୀରେ ଅନ୍ୱେଷଣ କରି କରି, ବୁଗୁଡ଼ା ବିରଞ୍ଚିନାରାୟଣ ମନ୍ଦିରରେ ସଂଗୃହୀତ ହୋଇ ରହିଥିବା ତାଳପତ୍ର ଖେଦାମାନଙ୍କ ଭିତରୁ ମୁଁ ଉକ୍ତ ଗ୍ରନ୍ଥର ସନ୍ଧାନ ପାଇଲି । ଏହି ମନ୍ଦିରରେ ରହିଥିବା ଏକମାତ୍ର ତାଳପତ୍ର ଖେଦାରେ ଦୁଇଟି ଭଞ୍ଜ ବଂଶାବଳୀ ରହିଛି । ସେଥିରୁ ଗୋଟିଏ କବି ସୂର୍ଯ୍ୟମଣି ରାଉତଙ୍କ ଦ୍ୱାରା ରଚିତ ଓ ଅନ୍ୟଟି ଶ୍ରୀକର ଭଞ୍ଜଙ୍କ ସମୟର ବୁଗୁଡ଼ା ମୁଠା କାର୍ଯ୍ୟୀ ଶ୍ରୀ ଗଙ୍ଗାଧର ମହାପାତ୍ରଙ୍କ ଦ୍ୱାରା ଲିଖିତ । ଏହି ଗ୍ରନ୍ଥଟି ଚଉଦ ଅକ୍ଷରୀ । ବୋଧହୁଏ ଏହି ଗ୍ରନ୍ଥକୁ ହିଁ ଐତିହାସିକ ଶ୍ରୀ ତାରଣୀଚରଣ, କାବ୍ୟକାର ଶ୍ରୀ ଚନ୍ଦ୍ରମଣି ମହାନ୍ତି ଓ ସଂଗ୍ରାହକ ଶ୍ରୀ ମାଗୁଣି ଦାସ * ଆଦି ପାଠ କରିଥିଲେ । ଯେ ଯାହାହେଉ, ଏହି 'ଭଞ୍ଜ ବଂଶାବଳୀ' ପୁସ୍ତକର ସମ୍ପାଦନାରେ ମୁଖ୍ୟ ପ୍ରତିବନ୍ଧକ ହେଲା ଏକାଧିକ ତାଳପତ୍ର ଗ୍ରନ୍ଥର ଅନୁପଲଭ୍ୟତା । ଅନ୍ୟ ଏକ ଗ୍ରନ୍ଥ ପାଇଁ ଗୁମୁସରରେ ବହୁ ସ୍ଥାନ ଅନ୍ୱେଷଣ କରିବା ସତ୍ତ୍ୱେ ପରିଶେଷରେ ନିରାଶ ହେବାକୁ ପଡ଼ିଲା । ସୁତରାଂ ସେହି ଏକମାତ୍ର ତାଳପତ୍ର ଗ୍ରନ୍ଥର ଅବଲମ୍ବନରେ ଏହି ପୁସ୍ତକଟି ସଂକଳନ କରିବାକୁ ବାଧ୍ୟ ହେଲି ।

---

* "ଭଞ୍ଜ ବଂଶାନୁଚରିତ"ର ସଂଗ୍ରାହକ । ଗ୍ରନ୍ଥଟି ମାତ୍ର ୩୦୪ ପୃଷ୍ଠା ସମ୍ବଳିତ । ଏହା ସର୍ବପ୍ରଥମେ ୧୯୫୧ରେ ପ୍ରକାଶ ପାଇଥିଲା ।

# କବି ପରିଚୟ :



ଭଞ୍ଜବଂଶର ପୁଣ୍ୟଶ୍ଳୋକ ତଥା ବୈଷ୍ଣବ ମହାରାଜା ଶ୍ରୀକର ଭଞ୍ଜଙ୍କ ଶାସନକାଳରେ ଯେଉଁ କେତେ ଜଣ କବି ଗୁମୁସରର କାବ୍ୟ ପରମ୍ପରାକୁ ଅକ୍ଷୁଣ୍ଣ ରକ୍ଷା କରିବାକୁ ଅଦମ୍ୟ ଚେଷ୍ଟା କରିଥିଲେ, ତନ୍ମଧ୍ୟରୁ କବି ସୂର୍ଯ୍ୟମଣି ଚମ୍ପାଭି ପଟ୍ଟନାୟକ ଅନ୍ୟତମ । କେଉଁ ଆବହମାନ କାଳରୁ ସୂର୍ଯ୍ୟମଣିଙ୍କ ବଂଶଧରମାନେ ସୁଦୂର କେନ୍ଦୁଝରରୁ ଆସିଥିଲେ ମଧ୍ୟ, ୧୭୭୩ ଖ୍ରୀଷ୍ଟାବ୍ଦର କେଉଁ ଏକ ଶୁଭଲଗ୍ନରେ ଗୁମୁସରର ଡେଙ୍ଗାପଦର ଗ୍ରାମରେ ଜନ୍ମଗ୍ରହଣ କରନ୍ତି କବି ସୂର୍ଯ୍ୟମଣି । ତୁଳସୀ ଦୁଇପତ୍ରରୁ ବାସିଲା ପରି ବାଲ୍ୟକାଳରୁ ହିଁ କବିଙ୍କ ଅସାଧାରଣ ଧୀଶକ୍ତିର ପରିଚୟ ମିଳିଥିଲା । ପିତା ବଳଭଦ୍ର ପଟ୍ଟନାୟକ ତତ୍କାଳୀନ ଗୁମୁସର ରାଜାଙ୍କର ଦିବାନ ଥିଲେ । ସୁତରାଂ ସୂର୍ଯ୍ୟମଣିଙ୍କ ବିଦ୍ୟାଶିକ୍ଷାରେ କୌଣସି ଅସୁବିଧା ଉପୁଜି ନଥିଲା । କବି ନିଜର ପରିଚୟ ଦେବାକୁ ଯାଇ, ସ୍ୱଗ୍ରନ୍ଥ 'ଅଧ୍ୟାତ୍ମ ରାମାୟଣରେ' ଉଲ୍ଲେଖ କରିଛନ୍ତି—

"ମୋହର ଜନକଙ୍କ ନାମ ବଳଭଦ୍ର
ଶ୍ରୀକରଣ ପଟ୍ଟନାୟକ ପ୍ରସିଦ୍ଧ ।
ଆପଣା ବୁଦ୍ଧିରେ ଅନନ୍ତ ଧୁରନ୍ଧର
ସୁବୁଦ୍ଧି ପଣେ ତାଙ୍କୁ ମାନନ୍ତି ଧୀର ନର ।
ଏ ଗୁମୁସର ମଧ୍ୟେ ବ୍ୟବହାର କରି
ବିଧାତା ଲେଖିଥିବା ଆୟୁକୁ ଦେଲେ ସାରି ।
ମୁଁ ତାଙ୍କ କୁମର ନାମ ମୋ ସୂର୍ଯ୍ୟମଣି
ଚମ୍ପାଭି ପଟ୍ଟନାୟକ ପଦ ମୋ ସର୍ବେ ଜାଣି ।
ଗୁମୁସର ରାଜ୍ୟରେ ବ୍ୟବହାର ଚଯ୍ୟ
କରିବାରେ ସରିଗଲା ମୋ ଆସି ବୟ ।
ଏ ସରିକଟି ପଞ୍ଚପଞ୍ଚାଶ ବୟସ
ଗଣକଙ୍କ ମତରେ ହୋଇଗଲା ଶେଷ ।"

କବି ସୂର୍ଯ୍ୟମଣି ମହାରାଜା ଶ୍ରୀକର ଭଞ୍ଜଙ୍କ ଦିବାନ୍ ଥିଲେ । ସେ ଜଣେ ବିଶ୍ୱାସୀ ଓ ନିଷ୍ଠାପର ରାଜକର୍ମଚାରୀ ଥିବା ହେତୁ ରାଜ୍ୟର ସମସ୍ତ କାର୍ଯ୍ୟ

ମହାରାଜା ତାଙ୍କର ହସ୍ତରେ ନ୍ୟସ୍ତ କରିଥିଲେ ଶ୍ରୀକର ଭଞ୍ଜ ଜଣେ ଧର୍ମ ପରାୟଣ ଓ ବୈଷ୍ଣବ ରାଜା ଥିଲେ । ମାତ୍ର ତାଙ୍କର ପୁତ୍ର ଧନଞ୍ଜୟ ଭଞ୍ଜ ମଧ୍ୟ ଜଣେ ଅତ୍ୟାଚାରୀ ଓ କାମୁକ ରାଜା ଥିଲେ । ଧନଞ୍ଜୟ ଭଞ୍ଜ ଓ ଦିବାନ୍ ସୂର୍ଯ୍ୟମଣିଙ୍କ ମଧ୍ୟରେ ସୁସମ୍ପର୍କ ନଥିଲା । ଏହାର କାରଣ ସମ୍ପର୍କରେ ଶ୍ରୀ ଅନନ୍ତପଦ୍ମନାଭ ପଟ୍ଟନାୟକ ତାଙ୍କର 'ଉତ୍କଳ ଗୌରବ' * ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି—"ଧର୍ମପ୍ରାଣ ରାଜା ଶ୍ରୀକର ଭଞ୍ଜ ମନ୍ତ୍ରୀ ସୂର୍ଯ୍ୟମଣିଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରି ସେଥିପ୍ରତି ଅଧିକ ଦୃଷ୍ଟି ଦେଇପାରୁନଥିଲେ ମଧ୍ୟ, ଦିବାନ୍ ସୂର୍ଯ୍ୟମଣିଙ୍କ କାର୍ଯ୍ୟ କୁଶଳତା, ନିରପେକ୍ଷ ଓ ନିରଙ୍କୁଶ ନୀତି ଯୋଗୁ ଦେବକାର୍ଯ୍ୟ ଓ ରାଜକାର୍ଯ୍ୟ ପରିଚାଳନାରେ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ହୋଇଥିଲା । × × × ଯୁବରାଜ ଧନଞ୍ଜୟ ଭଞ୍ଜ କିନ୍ତୁ ତୃପ୍ତ ନଥିଲେ । × × × ଯୁବରାଜ ଧନଞ୍ଜୟ ଭଞ୍ଜଙ୍କ ଦୁର୍ବାର ଇନ୍ଦ୍ରିୟ ଲାଳସା ତୃପ୍ତି ଅଜସ୍ର ଧନର ଅପେକ୍ଷା ରଖୁଥିଲା । ତାଙ୍କ ପାଇଁ ମାସିକ ଯାହା ଖଞ୍ଜାଥିଲା, ଦିବାନ୍ ତାହା ଅପେକ୍ଷା ଅଧିକ ଦେଇ ପାରୁନଥିଲେ । ମନ୍ତ୍ରୀ ପ୍ରତି ଧନଞ୍ଜୟଙ୍କ କ୍ରୋଧାଗ୍ନି ସେହି ହେତୁ ସୀମାଞ୍ଚିତ ହୋଇ ଉଠିଥିଲା । ତାହାର ଅବସାନ ସେତିକରେ ନୁହେଁ, ନିଜ ଦୁର୍ଗର ବିଶାଳ ବିଳାସ କ୍ଷେତ୍ରରେ ମନ୍ତ୍ରୀଙ୍କୁ ବିଷଦ୍ରୁମ ଜ୍ଞାନ କରି ତାହାର ଆମୂଳ ଉଚ୍ଛେଦ ସାଧନରେ ସେ ଅବିରତ ବ୍ରତୀ ଥିଲେ ।"

ଯେତେବେଳେ ଶ୍ରୀକର ଭଞ୍ଜ ସାଂସାରିକ ଭୋଗବିଳାସରୁ ତ୍ୟାଗକରି ବୈଷ୍ଣବ ହୋଇ ଚାଲିଗଲେ ସେତେବେଳେ ଧନଞ୍ଜୟ ସିଂହାସନାରୋହଣ କରି ଦିବାନ୍ ସୂର୍ଯ୍ୟମଣିଙ୍କୁ ବନ୍ଦୀ କଲେ ଓ ମୃତ୍ୟୁଦଣ୍ଡ ଆଦେଶ କଲେ । ମାତ୍ର ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଉକ୍ତ ଦଣ୍ଡାଦେଶ ତତ୍କାଳୀନ ଇଂରେଜ କଲେକ୍ଟରଙ୍କ ଦୃଷ୍ଟି ଆକର୍ଷଣ କରିବାରୁ, ସେ ଠିକ୍ ସମୟରେ କୁଲାଡ଼ ଦୁର୍ଗରେ ସସୈନ୍ୟେ ପହଞ୍ଚି ସୂର୍ଯ୍ୟମଣିଙ୍କୁ ଉଦ୍ଧାର କରିଥିଲେ । ସୂର୍ଯ୍ୟମଣିଙ୍କ ଜୀବନକାଳ ହେଉଛି ଗୁମୁସର ଇତିହାସରେ ଏକ ରୋମାଞ୍ଚକର ଅଧ୍ୟାୟ । ଭଞ୍ଜବଂଶର ପତନାବସ୍ଥାରେ ସୂର୍ଯ୍ୟମଣି ନିଜକୁ ବଞ୍ଚାଇବା ତଥା ରାଜ୍ୟର ମର୍ଯ୍ୟାଦାକୁ ଚିର ଅକ୍ଷୁଣ୍ଣ ରଖିବାକୁ ଅହରହ ଚେଷ୍ଟା କରିଥିଲେ । ଏପରିକି ଯେଉଁ ଅତ୍ୟାଚାରୀ ଧନଞ୍ଜୟ ଭଞ୍ଜ ତାଙ୍କୁ ମୃତ୍ୟୁ ଦଣ୍ଡାଦେଶ ଦେବାକୁ ତିଳେ ମାତ୍ର କୁଣ୍ଠିତ ହୋଇ ନଥିଲେ ତାଙ୍କର ମଧ୍ୟ ଅନିଷ୍ଟ କରିବା ପାଇଁ କବି

* ଉତ୍କଳ ଗୌରବ, ପ୍ରଥମ ଖଣ୍ଡ, ପୃ – ୩୦-୩୨ ( ପ୍ରଥମ ମୁଦ୍ରଣ ୧୯୫୨ )

ପଶ୍ଚାତ୍ପଦ ହୋଇଥିଲେ । "ଯେତେବେଳେ ଧନଞ୍ଜୟ ଭଞ୍ଜଙ୍କୁ ଇଂରେଜ ସରକାର ବନ୍ଦୀ କରି ନପାରିଲେ, ସେତେବେଳେ ତତ୍କାଳୀନ କଲେକ୍ଟର ଚ୍ୟାଉ ପଟ୍ଟନାୟକଙ୍କୁ ଉପଦେଷ୍ଟା ରୂପେ ପୁନର୍ବାର ଗୁମୁସର ଗଡ଼କୁ ଫେରନ୍ତ ଆସିବା ପାଇଁ ଅନୁରୋଧ କଲେ । ରତ୍ନ ପଟ୍ଟନାୟକ ରାଜସ୍ୱ ମନ୍ତ୍ରୀ ଓ ସୂର୍ଯ୍ୟମଣି ଚ୍ୟାଉ ସାମରିକ ମନ୍ତ୍ରୀ ରୂପେ ସେତେବେଳେ କାର୍ଯ୍ୟ କରୁଥିଲେ । କିନ୍ତୁ ସେମାନେ କମ୍ପାନୀ ସରକାରଙ୍କ ଉତ୍ଥାନ ଓ ସୁପ୍ରସିଦ୍ଧ ପ୍ରାଚୀନ ଭଞ୍ଜବଂଶର ପତନ ଆଦୌ ଗ୍ରହଣ ନଥିବାରୁ, ଇଂରେଜଙ୍କ ଇଷ୍ଟ, ଭଂଜବଂଶର ଅନିଷ୍ଟ । ସତ୍କଳ୍ପିତ ହେଉ ମଧ୍ୟ ବିଶ୍ୱସ୍ତ ଉପଦେଷ୍ଟା ଭାବରେ ସାଧନ କରିବାକୁ ସେମାନେ ରାଜି ହେଲେ ନାହିଁ । ସେମାନଙ୍କର ଶକ୍ତି ସାମର୍ଥ୍ୟ, ରାଜନୈତିକ କୌଶଳ ପ୍ରାଣ ପର୍ଯ୍ୟନ୍ତ ମଧ୍ୟ ପତନୋନ୍ମୁଖ ଭଂଜବଂଶର ଉଦ୍ଧାର ପାଇଁ କେବଳ ପ୍ରୟୋଗ କରିବାରେ ସେମାନେ ତ୍ରୁଟି କଲେ ନାହିଁ । ଯେଉଁ ଉଭୟ ପଟ୍ଟନାୟକଙ୍କଠାରେ ବିଶ୍ୱସ୍ତ ଉପଦେଷ୍ଟାର ଆଶାପୋଷଣ କରି କଲେକ୍ଟର ସାହେବ ପିଠି ଆଉଁସା ମାତ୍ର ଧରିଥିଲେ, ସେମାନଙ୍କଠାରେ ସେ ଭୀଷଣ ରାଜଦ୍ରୋହର ଲକ୍ଷଣ ଦେଖି ଚମକି ଉଠିଲେ । ଫଳତଃ ସେମାନଙ୍କୁ ଗୃହରୁ ଗୃହରୁ ଗୁମୁସରରୁ ଦୂର ସ୍ଥାନକୁ ଅନ୍ତର କରାଗଲା ।" *

"The two principal servants of the Zamindar Ratna Patnaik who kept all the accounts of the revenues and Chawoo Patnaik who kept those of the peons had joined the Collector......and resided with his people."

"That the two Patnaiks who had grown old in the offices they held, and know every spot and every persons in the Zamindari, could, if sincere in their profession of a desire to serve us bring over a body of the peons and furnish guide to any and every part of country."

---

* ଉତ୍କଳ ଗୌରବ ।

"The influence possessed by Ratna Patnaik and Chawoo Patnaik was exerted more against us than for us...I took upon myself the responsibility of the requesting the Collector to remove the two for men individuals to a distance from the Zamindary."

Russell
Madras Records—1836

ସୂର୍ଯ୍ୟମଣି ନିଜର ଜୀବନକାଳ ମଧ୍ୟରେ ଯେତେଦୂର ରାଜମାତ୍ତକ ଜୀବନ ସହିତ ସଂଲଗ୍ନ ଥିଲେ, ତେତିକ ସାହିତ୍ୟ ସେବା ତଥା ବାଣୀ ଆରାଧନା କରିପାରି ନାହାନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ସୁତରାଂ କବି ଅତ୍ୟନ୍ତ ଦୁଃଖରେ ନିଜର ଶ୍ରେଷ୍ଠକୃତି ଅଧ୍ୟାତ୍ମ ରାମାୟଣରେ ଲେଖିଛନ୍ତି—

"ସାଧୁ ସଙ୍ଗ କି ରୂପେ ତାକୁ ନ ଜାଣିଲି
ଅସାଧୁ ଜନ ସଙ୍ଗେ ନିରତେ ରହିଲି ।
ପରଲୋକେ କି ଗତି ହେବ ନ ଭାବିଲି
ଦୁଷ୍କର୍ମକୁ ସୁକର୍ମ ବୋଲି ଆଚରିଲି ।"

ପୃ : ୩୫—୩୬

ଅଧ୍ୟାତ୍ମ ରାମାୟଣ କବିଙ୍କର ପଞ୍ଚାବନ ବର୍ଷ ବୟସରେ ତଥା ୧୮୨୮ ଖ୍ରୀଷ୍ଟାବ୍ଦରେ ସମ୍ପୂର୍ଣ୍ଣ ହୋଇଥିବାର କବିଙ୍କ ଲେଖାରୁ ଜଣାଯାଏ—

"ସପତଶତ ପଞ୍ଚାଶତ ଶକାବ୍ଦରେ
ଏ ରାମାୟଣ ପୂର୍ଣ୍ଣ ହେଲା ହେ ସାଧୁ ନରେ
× × ×
ଏ ସରିକି ପଞ୍ଚ ପଞ୍ଚାଶ ବୟସ
ଗଣକଙ୍କ ମତରେ ହୋଇଗଲା ଶେଷ ।"

କବି ସୂର୍ଯ୍ୟମଣିଙ୍କ 'ଅଧ୍ୟାତ୍ମ ରାମାୟଣ' ଓଡ଼ିଆ ସାହିତ୍ୟକୁ ଏକ ବିଶିଷ୍ଟ ଅବଦାନ । "ଏହି ପୁସ୍ତକର ଭାଷା ସରଳ ଓ ମଧୁର ।" * ପୁଣି ଉକ୍ତ ଗ୍ରନ୍ଥ

* ଉତ୍କଳ ସାହିତ୍ୟର ଇତିହାସ (ପ୍ରଥମ ମୁଦ୍ରଣ) ଶ୍ରୀ ତାରିଣୀଚରଣ ରଥ, ପୃ—୪୫ ।

ସମ୍ପର୍କରେ ମତ ଦେବାକୁ ଯାଇ ପଣ୍ଡିତ ଶ୍ରୀ ବିନାୟକ ମିଶ୍ର ତାଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ' * ରେ ଲେଖିଛନ୍ତି—"ପୂର୍ବେ ଓଡ଼ିଆରେ କେହି ସଂସ୍କୃତ ରାମାୟଣର ଅବିକଳ ଅନୁବାଦ କରିନଥିଲେ । ସୂର୍ଯ୍ୟମଣି ଓଡ଼ିଆ ସାହିତ୍ୟର ଏମ ଅଭାବ ଦୂର କରି ଦେଶର ଅଶେଷ କଲ୍ୟାଣ ସାଧନ କରିଅଛନ୍ତି ।" ମାତ୍ର ଉପରୋକ୍ତ ଦୁଇଜଣ ଐତିହାସିକ ସୂର୍ଯ୍ୟମଣିଙ୍କ 'ଭଞ୍ଜ ବଂଶାବଳୀ' ଗ୍ରନ୍ଥ ସମ୍ପର୍କରେ ବୋଧହୁଏ ଅବଗତ ନଥିଲେ । ଏତଦ୍‌ବ୍ୟତୀତ ସୂର୍ଯ୍ୟମଣି ବହୁ ଭଜନ, ସ୍ତୋତ୍ର, ଜଣାଣ ଆଦି ରଚନା କରିଛନ୍ତି ।

ସୂର୍ଯ୍ୟମଣି ଚଢ଼ିଆପଲ୍ଲୀ ଓ ତନ୍ନିକଟବର୍ତ୍ତୀ ଜଳସରଖଣ୍ଡରେ ପଣ୍ଡିତ-ମାନଙ୍କ ସମାଗମରେ ନିଜର ଶେଷ ଜୀବନ ଯାପନ କରିଥିଲେ ବୋଲି ଶ୍ରୀ ଅନନ୍ତ ପଦ୍ମନାଭ ପଟ୍ଟନାୟକ ଉଲ୍ଲେଖ କରିଛନ୍ତି । * ସୂର୍ଯ୍ୟମଣି ୧୮୩୮ ଖ୍ରୀଷ୍ଟାବ୍ଦର କେଉଁ ଏକ ଅଶୁଭ ଲଗ୍ନରେ ଦେହତ୍ୟାଗ କରିଥିବା ଜଣାଯାଏ । ମାତ୍ର ପଣ୍ଡିତ ଶ୍ରୀ ବିନାୟକ ମିଶ୍ର ବୋଧହୁଏ ଭୁଲରେ ୧୮୨୮ ଖ୍ରୀଷ୍ଟାବ୍ଦରେ କବି ଦେହତ୍ୟାଗ କରିଛନ୍ତି ବୋଲି ତାଙ୍କର ଓଡ଼ିଆ ସାହିତ୍ୟର ଇତିହାସର ୧୭୦ ପୃଷ୍ଠାରେ ଉଲ୍ଲେଖ କରିଛନ୍ତି । ୧୮୨୮ ଖ୍ରୀଷ୍ଟାବ୍ଦରେ କବିଙ୍କ ଅଧ୍ୟାତ୍ମ ରାମାୟଣ ହିଁ ସମ୍ପୂର୍ଣ୍ଣ ହୋଇଥିଲା ।

## ରଚନାକାଳ :

'ଭଞ୍ଜ ବଂଶାବଳୀ' ଗ୍ରନ୍ଥର ରଚନାକାଳ ସମ୍ପର୍କରେ ଏକ ସ୍ଥିର ନିଶ୍ଚିତ ମତ ଦେବା ସମ୍ଭବପର ନୁହେଁ । କାରଣ କବି ସୂର୍ଯ୍ୟମଣି ଅଧ୍ୟାତ୍ମ ରାମାୟଣରେ ଯେପରି ରଚନାକାଳ ଉଲ୍ଲେଖ କରିଛନ୍ତି, ସେପରି ଏହି ଗ୍ରନ୍ଥରେ କରିନାହାନ୍ତି । ବିଶେଷରେ ଏଥିରେ ଯେଉଁସବୁ ଐତିହାସିକ ଘଟଣା ଓ ସମୟର ସୂଚନା ଦିଆଯାଇଛି ସେଥିରୁ ମନେହୁଏ ଯେ କବି ୧୮୨୦ ଖ୍ରୀଷ୍ଟାବ୍ଦ ପରେ ହିଁ ଏହାକୁ ରଚନା କରିଛନ୍ତି । କାରଣ ଏହି ଗ୍ରନ୍ଥରେ ୧୮୧୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଘଟିଥିବା ସମସ୍ତ ଘଟଣାର ଉଲ୍ଲେଖ ଦେଖିବାକୁ ମିଳେ । ୧୮୧୮ ଖ୍ରୀଷ୍ଟାବ୍ଦରେ ବୈଷ୍ଣବ ମହାରାଜା ଶ୍ରୀକର ଭଞ୍ଜ ଗଞ୍ଜାମ ଜେଲରୁ ଖସିଆସି ଦ୍ୱିତୀୟ ଥର ପାଇଁ ଗୁମୁସର ସିଂହାସନ ଆରୋହଣ କରନ୍ତି ଓ ୧୮୩୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ପୁଣି

* ପ୍ରଥମ ସଂସ୍କରଣ ୧୯୫୮, ପୃ—୧୭୦ ସ
* ଉତ୍କଳ ଗୌରବ, ପୃ—୪୨ ।

ଗୁମୁସର ରାଜ୍ୟ ଶାସନ କରନ୍ତି । ୧୭୮୮-୧୭୯୯ ଖ୍ରୀଷ୍ଟାବ୍ଦ ଅର୍ଥାତ୍ ଶ୍ରୀକର ଭଞ୍ଜଙ୍କ ପ୍ରଥମ ରାଜତ୍ୱ କାଳରେ ସୂର୍ଯ୍ୟମଣି ଗୁମୁସର ରାଜ୍ୟର ଦିୱାନ୍ ତଥା ମନ୍ତ୍ରୀ ଥିଲେ । ମାତ୍ର ୧୭୯୯ ଖ୍ରୀଷ୍ଟାବ୍ଦଠାରୁ ୧୮୧୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସେ ଗୁମୁସରରୁ ବିତାଡ଼ିତ ହୋଇଥିଲେ । କାରଣ ରାଜା ଧନଞ୍ଜୟ ଭଞ୍ଜଙ୍କ ସହିତ ତାଙ୍କର ଆଦୌ ସୁସମ୍ପର୍କ ନଥିଲା । ପୁଣି ଯେତେବେଳେ ଶ୍ରୀକର ଭଞ୍ଜ ଦ୍ୱିତୀୟ ଥର ପାଇଁ ରାଜ୍ୟଶାସନ କଲେ, ସେତେବେଳେ ସୂର୍ଯ୍ୟମଣି ପୁନର୍ବାର ଗୁମୁସରର ଦିୱାନ ହେଲେ । ଏହି ସମୟରେ ହିଁ ସେ ଅଧ୍ୟାତ୍ମ ରାମାୟଣ ରଚନା କରିଥିଲେ । ମନେହୁଏ ଯେ ସୂର୍ଯ୍ୟମଣି ଶ୍ରୀକର ଭଞ୍ଜଙ୍କୁ ସନ୍ତୋଷ କରିବା ପାଇଁ ବା ଶ୍ରୀକର ଭଞ୍ଜଙ୍କ ଅନୁରୋଧରେ ଭଞ୍ଜବଂଶର ବଂଶାବଳୀ ଲେଖିବାକୁ ଉଦ୍ୟତ ହୋଇଛନ୍ତି । ବୋଧହୁଏ ଶ୍ରୀକର ଭଞ୍ଜ କବିଙ୍କ ଅଧ୍ୟାତ୍ମ ରାମାୟଣ ପଢ଼ିସାରି ତାଙ୍କର ବଂଶ ସମ୍ପର୍କରେ କିଛି ଲେଖିବା ପାଇଁ ଅନୁରୋଧ କରିଛନ୍ତି । ଫଳରେ କବି ସମସ୍ତ ଭଞ୍ଜ ନରପତିମାନଙ୍କ ନାମୋଲ୍ଲେଖ କରି ଶ୍ରୀକର ଭଞ୍ଜଙ୍କ ରାଜତ୍ୱର ବହୁ କଥା ଟିକିନିଖି ଭାବେ ବର୍ଣ୍ଣନା କରିଛନ୍ତି । ଉକ୍ତ ପରିପ୍ରେକ୍ଷୀରେ କୁହାଯାଇପାରେ ଯେ ୧୮୨୮ ଖ୍ରୀଷ୍ଟାବ୍ଦରୁ ୧୮୩୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଏହି ଗ୍ରନ୍ଥ ରଚନା କରାଯାଇଥିବା ସମ୍ଭାବନା । ୧୮୩୦ ଖ୍ରୀଷ୍ଟାବ୍ଦରେ ଶ୍ରୀକର ଭଞ୍ଜ ଗୁମୁସର ସିଂହାସନ ତ୍ୟାଗ କଲାପରେ ବୋଧହୁଏ ସୂର୍ଯ୍ୟମଣି ଦୁଃଖରେ ଗୁମୁସର ତ୍ୟାଗ କରିଛନ୍ତି ଓ 'ଭଞ୍ଜ ବଂଶାବଳୀ'ର ଶେଷ ପର୍ଯ୍ୟାୟ ଅପୂର୍ଣ୍ଣ ଅବସ୍ଥାରେ ରହିଯାଇଛି ।

## ଗ୍ରନ୍ଥ ସମ୍ପର୍କରେ

ସଂସ୍କୃତ ଭାଷାରେ ମହାକବି କାଳିଦାସ ଯେପରି ଏକ ରାଜବଂଶକୁ ନେଇ 'ରଘୁବଂଶ' ମହାକାବ୍ୟ ସୃଷ୍ଟି କରିଥିଲେ, ଠିକ୍ ସେହିପରି ଓଡ଼ିଆ ସାହିତ୍ୟରେ ଗୁମୁସରରେ ଭଞ୍ଜ ରାଜବଂଶଙ୍କୁ ଆଧାର କରି କବି ସୂର୍ଯ୍ୟମଣି ତ୍ୟାଗ ପଟ୍ଟନାୟକ 'ଭଞ୍ଜ ବଂଶାବଳୀ' ରଚନା କରିଛନ୍ତି । ମାତ୍ର 'ରଘୁବଂଶ' ମହାକାବ୍ୟ, 'ଭଞ୍ଜ ବଂଶାବଳୀ' ଗ୍ରନ୍ଥ ଓ ରାଜତରଙ୍ଗିଣୀରେ ରଚିତ ଏକ ମନୋଜ୍ଞ ଇତିହାସ । ଭଞ୍ଜ ରାଜବଂଶକୁ ଆଧାର କରି କାବ୍ୟ ରଚନା କରିବା କବିଙ୍କ ଉଦ୍ଦେଶ୍ୟ ଥିଲା, କିନ୍ତୁ ତାହା ଯଥାଯଥ ଭାବେ ସଫଳତା ଅର୍ଜନ କରିପାରିନାହିଁ । ସୁତରାଂ ମତବ୍ୟକ୍ତ କରାଯାଇପାରେ ଯେ 'ଭଞ୍ଜ ବଂଶାବଳୀ' ମୁଖ୍ୟତଃ ଏକ ଇତିହାସ । ଏକ ରାଜବଂଶକୁ ନେଇ ବିଭିନ୍ନ ଛନ୍ଦ ଓ ବୃତ୍ତରେ ଏପରି ଏକ ଇତିହାସ

ରଚନା କରିବା ବୋଧହୁଏ ଓଡ଼ିଆ ସାହିତ୍ୟରେ କବି ସୂର୍ଯ୍ୟମଣିଙ୍କ ପ୍ରଥମ ପ୍ରଚେଷ୍ଟା । ଯେ ଯାହାହେଉ ଏହା ସମ୍ପୂର୍ଣ୍ଣ ଭାବେ କାବ୍ୟ ନହେଲେ ମଧ୍ୟ ଆଙ୍ଗିକ ରଚନାଶୈଳୀ ଦୃଷ୍ଟିରୁ କାବ୍ୟ କହିଲେ ବିଶେଷ ଭୁଲ ହେବନି ।

ଆଲୋଚ୍ୟ 'ଭଞ୍ଜ ବଂଶାବଳୀ' ଗ୍ରନ୍ଥଟି ରାଗରାଗିଣୀ ସମ୍ବଳିତ ଚଉଦ ଗୋଟି ଛାନ୍ଦରେ ବିଭକ୍ତ । ଏହି ଗ୍ରନ୍ଥ ବ୍ୟତୀତ ଗୁମୁସରରେ ଅନ୍ୟ ଦୁଇଟି 'ଭଞ୍ଜ ବଂଶାବଳୀ' ଦେଖାଯାଇଥାଏ ବୋଲି ପୂର୍ବେ କୁହାଯାଇଅଛି । ସେଥିରୁ ଗୋଟିଏ ହେଉଛି ଚଉଦ ଅକ୍ଷରୀ, ଯାହାକୁ ଭିତ୍ତି କରି ଐତିହାସିକ ଶ୍ରୀ ତାରିଣୀଚରଣ ରଥ ତାଙ୍କର 'ଗୁମୁସର ଇତିହାସ' ରଚନା କରିଥିଲେ । ଏହି ଗ୍ରନ୍ଥଟି ଗଙ୍ଗାଧର ମହାପାତ୍ର ନାମକ ଜନୈକ କାର୍ଯ୍ୟୀ ରଚନା କରିଥିଲେ । ଅନ୍ୟଟି ହେଉଛି 'ସଂସ୍କୃତ ଭଞ୍ଜ ବଂଶାବଳୀ' ଏହା ସଂସ୍କୃତ 'ଅନୁଷ୍ଟୁଭ୍' ବୃତ୍ତରେ ଲିଖିତ ଓ ଏତଦ୍‌ବ୍ୟତୀତ ୧୯୫୧ରେ ସଂଗ୍ରାହକ ଶ୍ରୀ ମାଗୁଣି ଦାସ ( ଭଞ୍ଜନଗର ) 'ଭଞ୍ଜ-ବଂଶାନୁଚରିତ' ନାମକ ୩୪ ପୃଷ୍ଠା ସମ୍ବଳିତ ଏକ ଗ୍ରନ୍ଥ ପ୍ରକାଶ କରିଥିଲେ । କିନ୍ତୁ ଏହାର ଅକ୍ଷର ସଂଖ୍ୟା ସବୁଠାରେ ସମାନ ନୁହେଁ । ପୁଣି ଏହା ସମ୍ପୂର୍ଣ୍ଣ ବୋଲି ମନେ ହୁଏନି । ଉପରୋକ୍ତ ସମସ୍ତ ବଂଶାବଳୀ ରାଗରାଗିଣୀରେ ରଚିତ ନ ହୋଇ ଏକ ବୃତ୍ତରେ ରଚିତ । ଯେ ଯାହାହେଉ ସୂର୍ଯ୍ୟମଣିଙ୍କ ପୂର୍ବରୁ ବା ପରେ ଅନ୍ୟ କେହିହେଲେ ବିଭିନ୍ନ ରାଗରାଗିଣୀ ସମ୍ବଳିତ ଓ ସରଳ ସାବଲୀଳ ଭାଷାରେ କୌଣସି ଗ୍ରନ୍ଥ ରଚନା କରିଥିବା ଦୃଷ୍ଟିଗୋଚର ହୁଏ ନାହିଁ । ଏହା ହିଁ ଆଲୋଚ୍ୟ ଗ୍ରନ୍ଥର ବୈଶିଷ୍ଟ୍ୟ କହିଲେ ଅତ୍ୟୁକ୍ତି ହେବନି ।

ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ 'ଭଞ୍ଜ ବଂଶାବଳୀ' ଗ୍ରନ୍ଥଟି ଚଉଦ ଗୋଟି ଛାନ୍ଦରେ ବିଭକ୍ତ । ଛାନ୍ଦଗୁଡ଼ିକର ରାଗ ମଧ୍ୟ ପୃଥକ । ଯଥା — ୧ମ ଛାନ୍ଦ ଚୋଖି, ୨ୟ ଛାନ୍ଦ – ମାଳବ, ୩ୟ ଛାନ୍ଦ - ମାଳବ, ୪ର୍ଥ ଛାନ୍ଦ—ଆଷାଢ଼ ଶୁକ୍ଳ, ୫ମ ଛାନ୍ଦ—ଆହାରି, ୬ଷ୍ଠ ଛାନ୍ଦ—କେଦାରକାମୋଦୀ, ୭ମ ଛାନ୍ଦ—କାମୋଦୀ, ଅଷ୍ଟମ ଛାନ୍ଦ—ମଙ୍ଗଳଗୁଜ୍ଜରୀ, ନବମ ଛାନ୍ଦ – କାଳି, ଦଶମ ଛାନ୍ଦ— ଖେମଟା ଏକତାଳି, ଏକାଦଶ ଛାନ୍ଦ—-ଖେମଟା ଏକତାଳି, ଦ୍ୱାଦଶ ଛାନ୍ଦ— ମଙ୍ଗଳ ବସନ୍ତ, ତ୍ରୟୋଦଶ ଛାନ୍ଦ—ବସନ୍ତ ବରାଡ଼ି, ଚତୁର୍ଦ୍ଦଶ ଛାନ୍ଦ—ରାମକେରୀ । କିନ୍ତୁ ଶ୍ରୀ ଅନନ୍ତପଦ୍ମନାଭ ପଟ୍ଟନାୟକ ତାଙ୍କର "ଉତ୍କଳ ଗୌରବ" ପୁସ୍ତକର ୯୫ ପୃଷ୍ଠାରେ ଉଲ୍ଲେଖ କରିଛନ୍ତି ଯେ "ଭଞ୍ଜ ବଂଶାବଳୀ ସେ (କବି ସୂର୍ଯ୍ୟମଣି) ଚୋଖି ପ୍ରଭୃତି ବିଭିନ୍ନ ବୃତ୍ତବିଶିଷ୍ଟ ଚବିଶ ଛାନ୍ଦରେ ଲେଖିଛନ୍ତି । ସେଥିରୁ

ଭଞ୍ଜବଂଶର ପ୍ରକୃତ ତଥ୍ୟ ବୁଝିହୁଏ । ଅନ୍ୟ କେତୋଟି ଚଉଦ ଅଧ୍ୟାୟ ବୃତ୍ତରେ କେହି କେହି ଅଜଣା ଅଶୁଣା ଦେଶୀୟ କବି ଲେଖିଛନ୍ତି, ତାହା ବିଶ୍ୱାସ-ଯୋଗ୍ୟ ନୁହେଁ ।" ଏହି ମତ କେତେଦୂର ବିଶ୍ୱାସଯୋଗ୍ୟ ତାହା ଅବଶ୍ୟ ଅଧିକତର ପ୍ରମାଣ ସାପେକ୍ଷ । କିନ୍ତୁ ଏଠାରେ କୁହାଯାଇପାରେ ଯେ 'ଭଞ୍ଜ ବଂଶାବଳୀ' ଚବିଶ ଛାନ୍ଦ ହେବା ସମ୍ଭବପର ନୁହେଁ । କାରଣ କବି ସୂର୍ଯ୍ୟମଣି ୧୮୩୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବଞ୍ଚିଥିଲେ ଓ ସେ ମଧ୍ୟରେ ଘଟିଥିବା ପ୍ରାୟ ସମସ୍ତ ଘଟଣାକୁ ହିଁ ନିଜର ରଚନା ମଧ୍ୟରେ ସ୍ଥାନ ଦେବାର କଥା । ଆଲୋଚ୍ୟ ଗ୍ରନ୍ଥରେ ଶ୍ରୀକର ଭଞ୍ଜ ଦ୍ୱିତୀୟ ଥର ପାଇଁ ରାଜା ହେବା ଅର୍ଥାତ୍ ୧୮୧୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଘଟିଥିବା ସମସ୍ତ ଘଟଣା ଉଣା ଅଧିକେ ବର୍ଣ୍ଣିତ । ୧୮୧୯ ପରେ ଅନ୍ୟ ଯେଉଁ ଐତିହାସିକ ଘଟଣା ଗୁମୁସରରେ ଘଟିଛି ତନ୍ମଧ୍ୟରୁ ଧନଞ୍ଜୟ ଭଞ୍ଜଙ୍କ ଦ୍ୱିତୀୟ ଥର ସିଂହାସନାରୋହଣ (୧୮୩୦-୧୮୩୫ ଖ୍ରୀଷ୍ଟାବ୍ଦ) ତଥା ଉକ୍ତ ସମୟର ବିଦ୍ରୋହ ହିଁ ମୁଖ୍ୟ ପ୍ରତିପାଦ୍ୟ ବିଷୟ । କବି ସୂର୍ଯ୍ୟମଣି ୧୮୩୦ ଖ୍ରୀଷ୍ଟାବ୍ଦ ପରେ ଗୁମୁସରରୁ ଚାଲିଯାଇ ଆଠଗଡ଼ ନିକଟବର୍ତ୍ତୀ ଚଢ଼ିଆ ପଲ୍ଲୀ ଗ୍ରାମରେ ବାସ କଲେ । ଫଳରେ ଗୁମୁସରରେ ଘଟୁଥିବା ସମସ୍ତ ଘଟଣାରୁ ସେ ଏକପ୍ରକାର ଅବହିତ ନଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ସୁତରାଂ ସେ ଅନ୍ୟ ସ୍ୱଳ୍ପ ବିଷୟକୁ ନେଇ ଆଉ ଅଧିକା ଦଶ ଗୋଟି ଛାନ୍ଦ ରଚନା କରିବା ମଧ୍ୟ କଷ୍ଟକର । ସେ ଯାହାହେଉ ଚବିଶ ଛାନ୍ଦ ବିଶିଷ୍ଟ 'ଭଞ୍ଜ ବଂଶାବଳୀ' ବର୍ତ୍ତମାନ ଦୃଷ୍ଟିଗୋଚର ହୁଏ ନାହିଁ ।

ଆଲୋଚ୍ୟ ଚଉଦ ଗୋଟି ଛାନ୍ଦର ବିଷୟବସ୍ତୁ କେବଳ ଭଞ୍ଜବଂଶକୁ କେନ୍ଦ୍ର କରିହିଁ ରଚିତ । ସେ ସମ୍ପର୍କରେ ବର୍ତ୍ତମାନ କିଛି ଆଲୋଚନା କରାଯାଉଅଛି । ପ୍ରଥମ ଛାନ୍ଦରେ କବି ସୂର୍ଯ୍ୟମଣି ଭଞ୍ଜବଂଶର ଉତ୍ପତ୍ତି ସମ୍ପର୍କରେ କଳ୍ପନାର ଆଶ୍ରୟ ନେଇଛନ୍ତି । ତ୍ରେତୟା ଯୁଗରେ ବଶିଷ୍ଠ ମହର୍ଷିଙ୍କ ଔରସରୁ ମୟୂରୀ ଗର୍ଭରୁ ଭଞ୍ଜବଂଶର ସୃଷ୍ଟି ହେଲା ବୋଲି କହିଛନ୍ତି । ଏହା ଯଦିଓ କପୋଳକଳ୍ପିତ ପରି ମନେହୁଏ ତଥାପି କବିଙ୍କ ବର୍ଣ୍ଣନା ନୈପୁଣ୍ୟ ଏତେଦୂର ବାସ୍ତବାଭିମୁଖୀ ଯେ ତାହା ପାଠକଲେ ତାକୁ ସହଜରେ କପୋଳକଳ୍ପିତ ବୋଲି କହିଦେବାର ଉପାୟ ନାହିଁ । ଦ୍ୱିତୀୟ ଛାନ୍ଦରେ ଭଞ୍ଜବଂଶର ପରମ୍ପରା କ୍ରମେ ରାଜାମାନଙ୍କ ନାମୋଲ୍ଲେଖ କରିବା ସଙ୍ଗେ ସଙ୍ଗେ କବି ଗୁମୁସର ଗଡ଼ର ପ୍ରତିଷ୍ଠାତା ରଘୁନାଥ ଭଞ୍ଜଙ୍କର ଚରିତ୍ର ସମ୍ପର୍କରେ ବର୍ଣ୍ଣନା କରିଛନ୍ତି । ଉକ୍ତ ଛାନ୍ଦରୁ ୮୩୬ ଖ୍ରୀଷ୍ଟାବ୍ଦରୁ ଗୁମୁସର ଗଡ଼ର ପ୍ରତିଷ୍ଠା ଓ ନାମ-

କରଣ ହେବାର ସୂଚନା ମିଳେ । ଦ୍ଵିତୀୟ ଛାନ୍ଦରେ ପୁଣି ପୁରୁଷାନୁକ୍ରମେ ବହୁ ରାଜାଙ୍କର ନାମ ଓ ରାଜତ୍ଵରେ ସମୟ ହିଁ କବି ସୂଚାଇଛନ୍ତି । ଏହି ଛାନ୍ଦରେ କବି ଭଞ୍ଜବଂଶର ଜନୈକ ରାଜା ଘାଟେଡ଼ି ଗୋପୀନାଥଙ୍କ ସମ୍ପର୍କରେ ବର୍ଣ୍ଣନା କରିବା ସମୟରେ ହାସ୍ୟରସର ଅବତାରଣା କରିଛନ୍ତି । ଏହି ହାସ୍ୟରସ ଅତ୍ୟନ୍ତ ଶାଣିତ । ପୁଣି କୁଲାଡ଼ହ କନ୍ଧକୁ ହତ୍ୟାକରି ପ୍ରତାପ ଭଞ୍ଜ କୁଲାଡ଼ଗଡ଼ ପ୍ରତିଷ୍ଠା କରିବାର କଥା ଏହି ଛାନ୍ଦରୁ ସୂଚିତ ହୁଏ । ଚତୁର୍ଥ ଛାନ୍ଦରେ ରାଜକବି ଧନଞ୍ଜୟ ଭଞ୍ଜଙ୍କ କୀର୍ତ୍ତି, କାର୍ଯ୍ୟକଳାପ, ରାଜ୍ୟଶାସନ ଆଦି ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ, ତାଙ୍କୁ ତାଙ୍କର ପାଟରାଣୀ ମିତ୍ରାଦେଈ କପଟରେ ବିଷ ଦେଇ ନିର୍ମମ ଭାବେ ହତ୍ୟା କଲେ, ସେ ସମ୍ପର୍କରେ କବି ବିସ୍ତୃତ ଭାବେ ବର୍ଣ୍ଣନା କରିଛନ୍ତି । ଉକ୍ତ ଛାନ୍ଦର ଶେଷ ଭାଗରେ ନୀଳକଣ୍ଠ ଭଞ୍ଜଙ୍କ ସିଂହାସନାରୋହଣ କପଟରେ ଏକ ନିଷ୍ଠୁର ମଧ୍ୟ ଦେଇ ଶେଷ ହୋଇଥିଲା, ତାହା କବି ସୃଷ୍ଟିରେ ମହନୀୟ ହୋଇପାରିଛି । ପଞ୍ଚମ ଛାନ୍ଦରେ ଘନଭଞ୍ଜ କପଟରେ ନୀଳକଣ୍ଠ ଭଞ୍ଜଙ୍କୁ ରାଜ୍ୟରୁ ବିତାଡ଼ିତ କରି ରଣଭଞ୍ଜଙ୍କୁ ରାଜା କଲେ ଓ ଅଳ୍ପ ଦିନପରେ ନିଜେ ରଣଭଞ୍ଜଙ୍କୁ ହତ୍ୟାକରି ସିଂହାସନ ଅଧିକାର କଲେ ବୋଲି ଉଲ୍ଲେଖ ହୋଇଛି । ଷଷ୍ଠ ଛାନ୍ଦରେ ଘନଭଞ୍ଜଙ୍କ ବୀରତ୍ଵ ଓ କ୍ଷତ୍ରିବର ଉପାଧିପ୍ରାପ୍ତ ବିଷୟରେ କବି ସୂଚନା ଦେଇଯାଇଛନ୍ତି । ସପ୍ତମ ଛାନ୍ଦରେ ଘନଭଞ୍ଜଙ୍କର ଜ୍ୟେଷ୍ଠପୁତ୍ର ଶ୍ରୀକୃଷ୍ଣ ଭଞ୍ଜଙ୍କ ରାଜତ୍ଵର କଥା ବର୍ଣ୍ଣିତ ହୋଇଛି । କୃଷ୍ଣଭଞ୍ଜ ଜଣେ ପ୍ରଭାବଶାଳୀ ଓ ଦକ୍ଷ ସୁଶାସକ ଥିଲେ । କୃଷ୍ଣଭଞ୍ଜଙ୍କ ସମ୍ପର୍କରେ କହିବାକୁ ଯାଇ ତତ୍କାଳୀନ "Ganjam District Manual" ରେ ଲେଖାଯାଇଛି ଯେ "Of the nineteen Rajas then in the Province of Itchapur Krushna Bhanja was most powerful." କୃଷ୍ଣଭଞ୍ଜ ଗୁମୁସର ମଧ୍ୟରେ ବହୁ ଧର୍ମକୀର୍ତ୍ତି କରିଛନ୍ତି ଯାହାର ସ୍ଵାକ୍ଷର ସ୍ଵରୂପ ବେଲଗୁଣ୍ଠା କୃଷ୍ଣସାଗର ଓ ନୃସିଂହ ମନ୍ଦିର ଅଦ୍ୟାବଧି ବିଦ୍ୟମାନ । କବି ସୂର୍ଯ୍ୟମଣି ଆଲୋଚ୍ୟ ଛାନ୍ଦରେ କୃଷ୍ଣଭଞ୍ଜଙ୍କ ବହୁ ପ୍ରଶସ୍ତି ଗାନ କରିଛନ୍ତି । ୧୭୬୨ ଖ୍ରୀଷ୍ଟାବ୍ଦରେ କୃଷ୍ଣଭଞ୍ଜ କୁମ୍ଭୁନ ନବାବଙ୍କୁ ୪୫ ହଜାର ଟଙ୍କା ଜମାବନ୍ଦି ଦେଇଥିଲେ । *

---

* ଏହି ରାଜାଙ୍କ ରାଜତ୍ଵ କାଳରେ ଗୁମୁସର ଫ୍ରେଞ୍ଚମାନଙ୍କ ଶାସନକୁ ଚାଲି ଯାଇଥିଲା । ଘନଭଞ୍ଜଙ୍କ ସମୟରେ ଗୁମୁସର ମୁସଲମାନ ନିଜାମ ସାଲବତ୍ ଜଙ୍ଗଙ୍କ ଅଧୀନରେ ରହିଥିଲା । ମାତ୍ର ଉକ୍ତ ନବାବ ଫରାସୀମାନଙ୍କଠାରୁ ସାହାଯ୍ୟ

ଅଷ୍ଟମ ସ୍କନ୍ଦରେ ରାଜ୍ୟ ସିଂହାସନ ପ୍ରାପ୍ତି ଉପରେ କୃଷ୍ଣଭଞ୍ଜଙ୍କ ଦୁଇପୁତ୍ର, ବିକ୍ରମ ଭଞ୍ଜ ଓ ଲକ୍ଷଣ ଭଞ୍ଜଙ୍କ ମଧ୍ୟରେ ବିବାଦ ଉପୁଜିଥିଲା ତାହାର ବର୍ଣ୍ଣନା କରାଯାଇଛି । ଉକ୍ତ ଦୁଇପୁତ୍ରଙ୍କ ମଧ୍ୟରୁ ଲକ୍ଷ୍ମଣ ଭଞ୍ଜ ଜ୍ୟେଷ୍ଠ ପୁତ୍ର ଓ ବିକ୍ରମ ଭଞ୍ଜ କନିଷ୍ଠ ପୁତ୍ର । ମହାରାଜା କୃଷ୍ଣ ଭଞ୍ଜ "ନୂଆଗଡ଼ରେ ବିବାହ ହେବା ସମୟରେ ନିୟମ କରିଥିଲେ" ଯେ ସେହି ନୂଆଗଡ଼ ରାଣୀଙ୍କ ଗର୍ଭରୁ ଯେଉଁ ପୁତ୍ର ଜନ୍ମ ହେବ ସେ ଗୁମୁସର ସିଂହାସନ ଅଧିକାର କରିବ । ସେହି ଚୁକ୍ତି ଅନୁସାରେ ୧୭୭୩ ଖ୍ରୀଷ୍ଟାବ୍ଦରେ ବିକ୍ରମ ଭଞ୍ଜ ଗୁମୁସର ରାଜଗାଦିରେ ଅଭିଷିକ୍ତ ହେଲେ । କିନ୍ତୁ ଜ୍ୟେଷ୍ଠ ପୁତ୍ର ଲକ୍ଷ୍ମଣ ଭଂଜ ତାହାକୁ ମାନି ନ ନେଇ ଇଂରେଜ ସାହେବଙ୍କ ସାହାଯ୍ୟରେ ବିକ୍ରମ ଭଂଜଙ୍କୁ ଯୁଦ୍ଧରେ ପରାସ୍ତ କରି ଗୁମୁସରରେ ରାଜା ହେଲେ । ପ୍ରଥମେ ବିକ୍ରମ ଭଂଜ ଇଂରେଜମାନଙ୍କୁ ଗୁମୁସରରୁ ୫୦,୦୦୦ ଟଙ୍କା ଖଜଣା ଦେଉଥିଲେ । ମାତ୍ର ଲକ୍ଷ୍ମଣ ଭଂଜ ଇଂରେଜମାନଙ୍କୁ ୭୦,୦୦୦ ହଜାର ଟଙ୍କା ଖଜଣା ଦେବାକୁ ଚୁକ୍ତି କଲେ । ପରେ ରାଜା ହେବା ପରେ ଇଂରେଜମାନଙ୍କୁ ସେ ୧ ଲକ୍ଷ ଟଙ୍କା ଖଜଣା ଦେବାକୁ ସ୍ୱୀକାର କଲେ । ଏହି ଉଭୟ ପୁତ୍ରଙ୍କ ବିବାଦରେ ଇଂରେଜମାନେ ଯଥେଷ୍ଟ ଲାଭବାନ୍ ହୋଇ ଗୁମୁସର ରାଜନୀତିରେ ପ୍ରତ୍ୟକ୍ଷ ଭାଗ ନେବାରେ ସକ୍ଷମ ହୋଇପାରିଥିଲେ । ନବମ ସ୍କନ୍ଦରେ ଲକ୍ଷ୍ମଣ ଭଂଜଙ୍କର ରାଜ୍ୟଶାସନ କଥା କବି ସୁନ୍ଦର ଭାବେ ବର୍ଣ୍ଣନା କରିଛନ୍ତି । ଲକ୍ଷ୍ମଣ ଭଂଜ ଯଦିଓ ଜଣେ ଉତ୍ତମ ରାଜା ଥିଲେ, ତଥାପି ତାଙ୍କର ସମୟରୁ ହିଁ ରାଜ୍ୟରେ ଇଂରେଜମାନେ ପ୍ରଭାବ ବିସ୍ତାର କରିବାକୁ ଲାଗିଲେ । ଲକ୍ଷ୍ମଣ ଭଂଜ 'ଧୂନ୍ଦି' ନାମକ ଏକ ଭଣ୍ଡାରିକୁ ମେଦମରାସ୍ତୁ ଉପାଧି ଦେଇ ରାଜ୍ୟରେ ସମସ୍ତ ଦାୟିତ୍ୱ ଅର୍ପଣ କରିଥିଲେ । ଏଥିପାଇଁ ସେ ନିଜର ପୁତ୍ର ଶ୍ରୀକର ଭଂଜ ଓ ପ୍ରଜାମାନଙ୍କର ସମାଲୋଚନାର ଶରବ୍ୟ ହୋଇଥିଲେ । ଲକ୍ଷ୍ମଣ ଭଂଜ ପୁରୁଣା ଗୁମୁସର ଗଡ଼ରେ ବାସୁଦେବ ମନ୍ଦିର ନିର୍ମାଣ କରି ସେଠାରେ ଏକ ଅଭିଲେଖ

---

ପାଇ, କୃତଜ୍ଞତା ସ୍ୱରୂପ ଗୁମୁସରର ( ଉତ୍ତର-ସର୍କାର ) ଶାସନ ଭାର ଅର୍ପଣ କରିଥିଲେ । ମାତ୍ର କ୍ରମଶଃ ଫରାସୀମାନଙ୍କର ପରାକ୍ରମ କମିଯିବାରୁ ନିଜାମ ଫରାସୀ ପକ୍ଷ ତ୍ୟାଗକରି ଇଂରେଜଙ୍କ ସହିତ ସନ୍ଧିକଲେ । ସନ୍ଧି-ସର୍ତ୍ତାନୁସାରେ ଉତ୍ତର-ସର୍କାର ସ୍ଥାୟୀ ଭାବରେ ଇଂରେଜଙ୍କ ହସ୍ତଗତ ହେଲା । ( ଗୁମୁସର ଇତିହାସ, ଶ୍ରୀ ତାରିଣୀଚରଣ ରଥ । )

ଲେଖାଇଥିଲେ । * ଲକ୍ଷ୍ମଣ ଭଂଜ ବାପାଙ୍କ ପରି ବହୁ ଦେବ ମନ୍ଦିର ନିର୍ମାଣ କରିଥିଲେ । ଦଶମ ଗ୍ରନ୍ଥରେ କବି ଶ୍ରୀକର ଭଂଜଙ୍କ ରାଜତ୍ୱ ବିଷୟ ବର୍ଣ୍ଣନା କରିଛନ୍ତି । ଏକାଦଶଠାରୁ ଚତୁର୍ଦ୍ଦଶ ଗ୍ରନ୍ଥ ପର୍ଯ୍ୟନ୍ତ କବି ସୂର୍ଯ୍ୟମଣି ଶ୍ରୀକରଭଂଜ ଓ ତାଙ୍କର ପୁତ୍ର ଧନଂଜୟ ଭଂଜଙ୍କ କଥା ହିଁ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି । କାରଣ କବି ଶ୍ରୀକର ଭଂଜଙ୍କ ରାଜତ୍ୱ ସମୟରେ ରାଜ୍ୟର ମନ୍ତ୍ରୀ ତଥା ଦିବାନ୍ ଥିଲେ । ବାପାଙ୍କ ପରି ଶ୍ରୀକର ଭଂଜ ମଧ୍ୟ ଇଂରେଜମାନଙ୍କୁ ଖଜଣା ଦେଉଥିଲେ । ଶ୍ରୀକର ଭଂଜ ସମସ୍ତ କାର୍ଯ୍ୟ କରିବା ସମୟରେ ରାଜ୍ୟର ପଧାନ କାର୍ଯୀ ଓ କଲେକ୍ଟରମାନଙ୍କୁ ଉତ୍ତର ବୁଝି ସମ୍ପାଦନ କରୁଥିଲେ । ଏଥି ଆଲୋଚ୍ୟ ଗ୍ରନ୍ଥଗୁଡ଼ିକରୁ ସ୍ପଷ୍ଟ ବୁଝା ପଡ଼ୁଥାଏ । ଇଂରେଜମାନଙ୍କ ରାଜ୍ୟରେ ହସ୍ତକ୍ଷେପ ଓ ପୁତ୍ର ଧନଂଜୟ ଭଂଜଙ୍କ ଦୌରାତ୍ମ୍ୟକୁ ସହ୍ୟ କରି ନପାରି ଶ୍ରୀକର ଭଂଜ ୧୭୯୯ ଖ୍ରୀଷ୍ଟାବ୍ଦରେ ପୁତ୍ରଙ୍କୁ "ରାଜଗାଦି" ପ୍ରଦାନ କରି ବୈଷ୍ଣବ ହୋଇ ଚାଲିଗଲେ । ଧନଂଜୟ ଭଂଜ ରାଜା ହେବା ସଙ୍ଗେ ସଙ୍ଗେ ରାଜ୍ୟର ଅଧିକାଂଶ କର୍ମଚାରୀଙ୍କୁ ବନ୍ଦ କଲେ ଓ ଅଧିକ ଅର୍ଥପାଇଁ ଏକ ଚୋର ଦଳ ଗଠନ କରି ପଡ଼ୋଶୀ ରାଜ୍ୟମାନଙ୍କୁ ପଠାଇଲେ । ଧନଞ୍ଜୟ ଭଂଜ ଜଣେ ଅତ୍ୟାଚାରୀ ଓ କାମୁକ ରାଜାଥିଲେ । ତାଙ୍କ ସହିତ ଇଂରେଜ ସାହେବମାନଙ୍କର ଭଲ ସମ୍ପର୍କ ନଥିଲା । *

---

* "କୃଷ୍ଣ ଭଂଜ ରାଜାଙ୍କର ପଟ୍ଟଶୋଭା ପାଟ ମହାଦେଈ । ଏହାଙ୍କ ପୁଅ ଲକ୍ଷ୍ମଣ ଭଂଜ ରାଜା । ଏ ପ୍ରାସାଦ ଶ୍ରୀ ବାସୁଦେବ ମହାପ୍ରଭୁଙ୍କ ନିର୍ମାଣ କରିଅଛନ୍ତି । ବୀର କେଶରୀ ଦେବ ୫ ଅଙ୍କ । ଶାଳିବାହନ ଶକାବ୍ଦ ୧୭୦୪ ।"

* There can be but little doubt however that Dhanjaya Bhunja was guilty of the most atrocious and inhuman crimes. Amongst others he was charged with murdering his mother and his own son besides three out of four of his wives."

Madras Records, 1836.

"Colonel Flecther who commanded the troops against him and when he had attempted to bribe with a sum of Rs. 7000, calls him "that tyrannous monster the bare recital of whose fiendish acts

ଏକାଦଶ ଛନ୍ଦରେ ମଧ୍ୟ କବି ଧନଞ୍ଜୟ ଭଞ୍ଜଙ୍କର ଅତ୍ୟାଚାର ସମ୍ପର୍କରେ ହିଁ ବର୍ଣ୍ଣନା କରନ୍ତି । ଅଳ୍ପ ଦିନପରେ ଶ୍ରୀକର ଭଞ୍ଜ ତୀର୍ଥରୁ ଫେରି ପୁତ୍ରଙ୍କର ଅତ୍ୟାଚାର ଦେଖି ମର୍ମାହତ ହୋଇପଡ଼ିଲେ ଓ ରାଜ୍ୟର ଶାସନ ଭାର ପୁଣି ଥରେ ନିଜ ହାତକୁ ନେଲେ । ମାତ୍ର ପୁତ୍ର ଧନଞ୍ଜୟ ଏଥିରେ ରାଜି ନ ହୋଇ ରାଜ୍ୟରେ ବିଦ୍ରୋହ, ଲୁଟତରାଜ ଆରମ୍ଭ କରିଦେଲେ । ବହୁ ଦୁଷ୍ଟ ଚୋର ଲୋକଙ୍କୁ ଧରି ଘର ରାଜ୍ୟରୁ [illegible] କରି ଶ୍ରୀକର ଭଞ୍ଜଙ୍କ ନାମରେ ବଦନାମ କଲେ । ଏହି ସମୟରେ ଶ୍ରୀକର ଭଞ୍ଜଙ୍କ ସହିତ ଇଂରେଜମାନଙ୍କର ସୁସମ୍ପର୍କ ନଥିଲା । ସୁତରାଂ ପିତା ପୁତ୍ରଙ୍କର ବିବାଦକୁ କେନ୍ଦ୍ର କରି ସେମାନେ ହସ୍ତକ୍ଷେପ କରିବାକୁ ଉଦ୍ୟମ କଲେ ଓ ଧନଞ୍ଜୟ ଭଞ୍ଜଙ୍କୁ ସାହାଯ୍ୟ କଲେ । ଶେଷରେ ସେମାନଙ୍କ ହସ୍ତକ୍ଷେପରେ ଧନଞ୍ଜୟ ଭଞ୍ଜ ରାଜ୍ୟରେ ରାଜା ହେଲେ ଓ ଶ୍ରୀକର ଭଞ୍ଜ କେବଳ ପାଞ୍ଚଗୋଟି ମୁଠାର ଶାସନ ଭାର ନିଜ ହସ୍ତରେ ରଖିବାକୁ ବାଧ୍ୟ ହେଲେ । ଦ୍ୱାଦଶ ଛନ୍ଦରେ ମଧ୍ୟ କବି ଧନଞ୍ଜୟ ଭଞ୍ଜଙ୍କ କ୍ଷମତାର ଅପବ୍ୟବହାର ଓ ଅତ୍ୟାଚାରର ଏକ ବିଶଦ୍ ବର୍ଣ୍ଣନା କରିଅଛନ୍ତି । ଧନଞ୍ଜୟ ଭଞ୍ଜ କିପରି ଜଣେ ଲମ୍ପଟ ରାଜାଥିଲେ ତାହା କବିଙ୍କ ଗୋଟିଏ ଉକ୍ତିରୁ ସ୍ପଷ୍ଟ ହୋଇପଡ଼ିବ—

"ବହୁତ ଜାତିରୁ ସ୍ତ୍ରୀମାନ ଆଣିଲେ
ଯତ୍ନ ବଡ଼ କରି ନହରରେ ରଖିଲେ ।
ଯା ଘରେ ସୁନ୍ଦରୀ ସ୍ତ୍ରୀମାନେ ତ ଥିଲେ
ବଳାତ୍କାର କରି ତାଙ୍କୁ ଘେନି ଆସିଲେ ।"

---

makes humanity shudder." In the gloomy fort at Kuilada he appears to have been in the habit of immuring prisoners who had excited his vengeance and unfortunate women, the victims of his lust and starving them to death by slow degrees. Some he confined in stocks, whilst he bent the hands of others with heavy stones or tied them to stakes and left them to a lingering death." — Madras Records.

ତା ପରେ ଇଂରେଜମାନଙ୍କୁ ଠିକ୍ ସମୟରେ ଖଜଣା ନ ଦେବାରୁ ଇଂରେଜମାନଙ୍କ ସହିତ ମଧ୍ୟ ତାଙ୍କର ମନୋମାଳିନ୍ୟ ଘଟିଲା । ଫଳରେ ତତ୍କାଳୀନ କଲେକ୍ଟର ମେଡ୍ରାସ ଗଭର୍ଣ୍ଣରଙ୍କୁ ଏ ବିଷୟ ଜଣାଇଲେ । ସପ୍ତଦଶ ଛାନ୍ଦରେ କବି ଶ୍ରୀକର ଭଞ୍ଜଙ୍କ ସହିତ ତତ୍କାଳୀନ ମେଡ୍ରାସ ଗଭର୍ଣ୍ଣରଙ୍କ ମହିତ କପଟ ପରିଚୟ ହେଲା, ସେ ସମ୍ପର୍କରେ ଏକ ସୁନ୍ଦର ଚିତ୍ର ଦେଇଛନ୍ତି । ଗଭର୍ଣ୍ଣରଙ୍କ ପୁତ୍ରଙ୍କୁ ସର୍ପ ଘାତ ହୋଇଥିଲା । ମାତ୍ର ଶ୍ରୀକର ଭଞ୍ଜ ମନ୍ତ୍ରବଳରେ ତାଙ୍କୁ ଜୀବନ ଦାନ ଦେଇପାରି ଗଭର୍ଣ୍ଣରଙ୍କ ଆଦରର ପାତ୍ର ହୋଇପାରିଥିଲେ । ସେତେବେଳେ ଶ୍ରୀକର ଭଞ୍ଜ ପୁତ୍ର ଧନଞ୍ଜୟ ଭଞ୍ଜଙ୍କ ଅତ୍ୟାଚାର ବିଷୟ ଗଭର୍ଣ୍ଣରଙ୍କୁ ଜଣାଇଥିଲେ । ତାର କିଛି ଦିନପରେ ଧନଞ୍ଜୟ ଭଞ୍ଜ ତତ୍କାଳୀନ ସାହେବଙ୍କ ଦ୍ୱାରା ବନ୍ଦୀ ହୋଇଲେ । ପୁଣି ଗୁମୁସରରେ ବିଦ୍ରୋହର ଆଶଙ୍କା କରି ସାହେବ ଶ୍ରୀକର ଭଞ୍ଜଙ୍କୁ ବନ୍ଦୀ କଲେ । ଏହିପରି ଭାବେ ପିତା ପୁତ୍ର ଉଭୟ ଚିଙ୍ଗୁଲପ ଜେଲରେ ବନ୍ଦୀ ହୋଇ ରହିଲେ । ଚତୁର୍ଦ୍ଦଶ ଛାନ୍ଦରେ ଶ୍ରୀକର ଭଞ୍ଜ କପଟ କୌଶଳରେ ସହିତ ଜେଲରୁ ଖସି ଚାଲି ଆସିଲେ, ତାହା ବର୍ଣ୍ଣନା କରାଯାଇଛି । ସେ ଜେଲରୁ ଆସିବା ପୂର୍ବରୁ ରାଜ୍ୟର ସର୍ଦ୍ଦାରମାନେ ଗୋଟିଏ ଝିଅକୁ ବଳଭଦ୍ର ଭଞ୍ଜ ବେଶ ( ଧନଞ୍ଜୟଙ୍କ ପୁତ୍ର ) ପକାଇ ରାଜାରୂପେ ଘୋଷଣା କରିଥିଲେ; କିନ୍ତୁ ଶ୍ରୀକର ଭଞ୍ଜ ତାହା ଜାଣିପାରି କଲେକ୍ଟରଙ୍କ ଦୃଷ୍ଟି ଆକର୍ଷଣ କଲେ । ଫଳରେ କଲେକ୍ଟର ଅତ୍ୟନ୍ତ ପ୍ରୀତ ହୋଇ ଶ୍ରୀକର ଭଞ୍ଜଙ୍କୁ ପୁନର୍ବାର ରାଜାରୂପେ ସ୍ୱୀକାର କଲେ ଓ ଶ୍ରୀକର ଭଞ୍ଜ ୧୮୧୮ ଖ୍ରୀଷ୍ଟାବ୍ଦରେ ପୁଣି ଗୁମୁସରରେ ରାଜା ହେଲେ ।

**ବଂଶବୃକ୍ଷ :**

ଆଲୋଚ୍ୟ ଗ୍ରନ୍ଥକୁ ଆଧାର କରି ଯେଉଁ ବଂଶବୃକ୍ଷ ଉଦ୍ଧାର କରାଯାଇଛି ତାହା ନିମ୍ନରେ ପ୍ରଦତ୍ତ ହେଲା—




* ଶ୍ରୀ ରଘୁନାଥ ଭଞ୍ଜ ସମ୍ଭବତଃ ୮୩୨ ଖ୍ରୀଷ୍ଟାବ୍ଦରେ ମେଳିଆମାନଙ୍କୁ ଦମନ କରି ଗୁମୁସର ଗଡ଼ ସ୍ଥାପନ କରିଥିଲେ ।

(୨) ଅର୍ଜୁନ ଭଞ୍ଜ (୮୫୩-୮୭୮)

|

(୩) କେଶବ ଭଞ୍ଜ (୮୭୮-୮୮୮)

|

(୪) ବନମାଳୀ ଭଞ୍ଜ (୮୮୮-୯୦୪)

|

(୫) ଗୋପାଳ ଭଞ୍ଜ (୯୦୪-୯୨୭)

|

(୬) ଗୋବିନ୍ଦ ଭଞ୍ଜ (୯୨୭-୯୪୨)

|

(୭) ଜଗନ୍ନାଥ ଭଞ୍ଜ (୯୪୨-୯୫୪)

|

(୮) ହରିକୃଷ୍ଣ ଭଞ୍ଜ (୯୫୪-୯୬୯)

|

(୯) ଗୌରହରି ଭଞ୍ଜ (୯୬୯-୯୭୯)

|

(୧୦) କୃଷ୍ଣ ଭଞ୍ଜ (୯୭୯-୯୯୫)

|

(୧୧) ନରସିଂହ ଭଞ୍ଜ (୯୯୫-୧୦୧୩)

|

(୧୨) ବଳଭଦ୍ର ଭଞ୍ଜ (୧୦୧୩-୧୦୩୪)

|

(୧୩) ମୁକୁନ୍ଦ ଭଞ୍ଜ (୧୦୩୪-୧୦୫୦)

|

(୧୪) ମଧୁସୂଦନ ଭଞ୍ଜ (୧୦୫୦-୧୦୬୫)

|

(୧୫) ନାରାୟଣ ଭଞ୍ଜ (୧୦୬୫-୧୦୮୪)

|

(୧୬) ହରଧର ଭଞ୍ଜ (୧୦୮୪-୧୦୯୯)

(୧୭) ନରହରି ଭଞ୍ଜ (୧୦୯୯-୧୧୧୭)

(୧୮) ଜଗନ୍ନାଥ ଭଞ୍ଜ (୧୧୧୭-୧୧୩୬)

(୧୯) ମତ୍ତହସ୍ତୀ ଭଂଜ (୧୧୩୬—୧୧୫୫)

(୨୦) ପୁରୁଷୋତ୍ତମ ଭଂଜ (୧୧୫୫-୧୧୬୫)

(୨୧) ବଜ୍ରଧର ଭଂଜ (୧୧୬୫-୧୧୭୫)

(୨୨) ହରିଶରଣ ଭଂଜ (୧୧୭୫-୧୧୮୮)

(୨୩) କପିଳ ଭଂଜ (୧୧୮୮-୧୨୧୫)

(୨୪) ଶ୍ରୀଧର ଭଂଜ (୧୨୧୫-୧୨୩୦)

(୨୫) ରାମଚନ୍ଦ୍ର ଭଂଜ (୧୨୩୦-୧୨୫୧)

(୨୬) ଲକ୍ଷ୍ମଣ ଭଂଜ (୧୨୫୧-୧୨୬୬)

(୨୭) ତ୍ରିଲୋଚନ ଭଂଜ (୧୨୬୬-୧୨୮୪)

(୨୮) ହରସେବକ ଭଂଜ (୧୨୮୪-୧୩୦୧)

(୨୯) ଗଦାଧର ଭଂଜ (୧୩୦୧-୧୩୨୬)

(୩୦) ଦୟାନିଧି ଭଂଜ (୧୩୨୬-୧୩୪୭)

(୩୧) ଗିରିଧର ଭଂଜ (୧୩୪୭-୧୩୬୬)

(୩୨) କୃପାସିନ୍ଧୁ ଭଂଜ (୧୩୬୬-୧୩୭୮)

(୩୩) ଚନ୍ଦ୍ରନାଥ ଭଂଜ (୧୩୭୮-୧୪୦୪)

(୩୪) ମାଧବ ଭଂଜ (୧୪୦୪-୧୪୧୯)

(୩୫) କମଳଲୋଚନ ଭଂଜ (୧୪୧୯-୧୪୩୩)

(୩୬) ହରିହର ଭଂଜ
(୧୪୩୯-୧୪୫୩)

(୩୭) ପୀତାମ୍ବର ଭଂଜ
(୧୪୫୩-୧୪୬୬)

(୩୮) ନଳିନାକ୍ଷ ଭଂଜ
(୧୪୬୬-୧୪୭୮)

(୩୯) ତ୍ରିବିକ୍ରମ ଭଂଜ
(୧୪୭୮-୧୪୮୮)

(୪୦) ଗଜେନ୍ଦ୍ର ଭଂଜ
(୧୪୮୮-୧୫୦୪)

(୪୧) ଗୋପାଳ ଭଂଜ
(୧୫୦୪-୧୫୧୯)

(୪୨) ପାଟେଳ ଗୋପୀନାଥ ଭଂଜ
(୧୫୧୯-୧୫୪୧)

(୪୩) ରଣ ଭଂଜ
(୧୫୪୧-୧୫୬୩)

(୪୪) ଜଗନ୍ନାଥ ଭଂଜ
(୧୫୬୩-୧୫୯୦)

* (୪୫) ପ୍ରତାପ ଭଂଜ
(୧୫୯୦-୧୬୦୩)

(୪୬) ବନମାଳୀ ଭଂଜ
(୧୬୦୩-୧୬୧୦)

(୪୭) ଗୋପୀନାଥ ଭଂଜ
(୧୬୧୦-୧୬୩୨)

(୪୮) (୧) ପ୍ରତାପ ଧନଂଜୟ ଭଂଜ
(୧୬୩୨-୧୬୯୭)

(୪୯) ନୀଳକଣ୍ଠ ଭଂଜ
(୧୬୯୭-୧୬୯୯)

(୫୦) ରଣ ଭଂଜ
(୧୬୯୯-୧୭୦୩)

(୫୧) ଘନ ଭଂଜ
(୧୭୦୩-୧୭୪୦)

(୫୨) କୃଷ୍ଣ ଭଂଜ
(୧୭୪୦-୧୭୭୩)

(୫୩) ତ୍ରିବିକ୍ରମ ଭଂଜ
(୧୭୭୩-୧୭୮୨)

---

* କୁଳଡ଼ଗଡ଼ର ପ୍ରତିଷ୍ଠାତା ।

(୫୪) ଲକ୍ଷ୍ମଣ ଭଂଜ
(୧୭୮୨-୧୭୮୮)
|
(୫୫) ଶ୍ରୀକର ଭଂଜ
(୧୭୮୯-୧୭୯୯,
୧୮୧୯-୧୮୩୦)
|
(୫୬) (୨) ଧନଂଜୟ ଭଂଜ
(୧୭୯୯-୧୮୦୮,
(୧୮୩୨-୧୮୩୫)
|
(୫୭) ବ୍ରଜରାଜ ଭଂଜ

ଏହାର ପୂର୍ବରୁ ଐତିହାସିକ ଶ୍ରୀ ତାରଣୀଚରଣ ରଥ ତାଙ୍କର "ଘୁମୁସର ଇତିହାସରେ" ଏକ ବଂଶବୃକ୍ଷ ପ୍ରଦାନ କରିଛନ୍ତି । ସେହି ବଂଶବୃକ୍ଷକୁ ପଣ୍ଡିତ ରଥେ ଚଉଧ ଅକ୍ଷରୀ ଭଞ୍ଜ ବଂଶାବଳୀରୁ ବୋଧହୁଏ ଉଦ୍ଧାର କରିଛନ୍ତି । ତାଙ୍କ ପରେ ଶ୍ରୀ ଅନନ୍ତପଦ୍ମନାଭ ପଟ୍ଟନାୟକ ତାଙ୍କର 'କବିସମ୍ରାଟ ଉପେନ୍ଦ୍ର ଭଞ୍ଜ' ସମାଲୋଚନା ଗ୍ରନ୍ଥର ୨୪୯ ପୃଷ୍ଠାରେ ଉଲ୍ଲେଖ କରିଛନ୍ତି । କିନ୍ତୁ ଐତିହାସିକ ରଥଙ୍କ ବଂଶବୃକ୍ଷ ଓ ଶ୍ରୀ ଅନନ୍ତପଦ୍ମନାଭ ପଟ୍ଟନାୟକଙ୍କ ବଂଶବୃକ୍ଷ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ବୋଧହୁଏ ଶ୍ରୀ ପଟ୍ଟନାୟକ "ଘୁମୁସର ଇତିହାସରୁ" ହିଁ ନିଜର ବଂଶବୃକ୍ଷଟିକୁ ଉଦ୍ଧୃତ କରିଛନ୍ତି । କବି ସୂର୍ଯ୍ୟମଣିଙ୍କ ବଂଶବୃକ୍ଷ ଓ ଶ୍ରୀ ତାରଣୀଚରଣ ରଥ ପ୍ରଦତ୍ତ ବଂଶବୃକ୍ଷ ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ରହିଛି । ଏହି ଦୁଇଟି ମଧ୍ୟରୁ କେଉଁଟି ଠିକ୍ ତାହା ଧଡିକ୍ ଭାବେ ମତ ଦେବା ସମ୍ଭବପର ନୁହେଁ । ଉଭୟଙ୍କ ମତରେ ଘୁମୁସର ଭଞ୍ଜବଂଶର ପ୍ରଥମ ରାଜା ହେଉଛନ୍ତି ରଘୁନାଥ ଭଞ୍ଜ ଓ ସେ ୮୩୨ ଖ୍ରୀଷ୍ଟାବ୍ଦରେ ଘୁମୁସର ସିଂହାସନରେ ଅଧିଷ୍ଠିତ ହୋଇଥିଲେ । ସୂର୍ଯ୍ୟମଣିଙ୍କ ବଂଶବୃକ୍ଷରେ କେତେ ଗୋଟି ନୂତନ ରାଜାଙ୍କ ନାମ ଦେଖାଯାଏ ଓ ଶ୍ରୀ ତାରଣୀଚରଣ ରଥଙ୍କ ବଂଶବୃକ୍ଷରେ ପ୍ରଦତ୍ତ କେତେ ଜଣ ରାଜାଙ୍କ ନାମ ମଧ୍ୟ ଏଥିରେ ଦେଖାଯାଏ ନାହିଁ । ସେହି ପାର୍ଥକ୍ୟଗୁଡ଼ିକ ହେଉଛି—

(୧) କବି ସୂର୍ଯ୍ୟମଣିଙ୍କ ବଂଶବୃକ୍ଷାନୁସାରେ ଭଞ୍ଜବଂଶର ନବମ ନରପତି ହେଉଛନ୍ତି ଗୌରହରି ଭଞ୍ଜ ଓ ସେ ୯୬୯ ଖ୍ରୀଷ୍ଟାବ୍ଦରୁ ୯୭୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ମାତ୍ର ଐତିହାସିକ ରଥଙ୍କ ପ୍ରଦତ୍ତ ବଂଶବୃକ୍ଷର ନବମ ରାଜା ହେଉଛନ୍ତି ଗୋକୁଳ ଭଂଜ ଓ ତାଙ୍କର ରାଜତ୍ୱ ସମୟ ହେଉଛି ୯୫୭—୯୭୨ ଖ୍ରୀଷ୍ଟାବ୍ଦ ।

(୨) ସେହିପରି ଶ୍ରୀ ତାରଣୀଚରଣ ବଂଶବୃକ୍ଷରେ ପୁରୁଷୋତ୍ତମ ଭଂଜ (୨୧ତମ ରାଜା)ଙ୍କ ପରେ ପ୍ରତାପ ଭଂଜ ରାଜା ହେଲେ ବୋଲି ଉଲ୍ଲେଖ ଅଛି ।

ମାତ୍ର ଭଂଜ ବଂଶାବଳୀରେ ପ୍ରତାପ ଭଂଜଙ୍କ ନାମୋଲ୍ଲେଖ ହିଁ ଦେଖାଯାଇ ନଥାଏ । ଏଥିରେ ପୁରୁଷୋତ୍ତମ ଭଂଜଙ୍କ ପୁତ୍ର ବଜ୍ରଧର ଭଂଜ ବୋଲି ଲେଖା ଅଛି । ଏହି ବଜ୍ରଧର ନାମଟି ପରିବର୍ତ୍ତିତ ହୋଇ ତାରଣୀଚରଣଙ୍କ ବଂଶ-ବୃକ୍ଷରେ ଚକ୍ରଧର ହୋଇଛି । ସେହିପରି ଆଲୋଚ୍ୟ ଗ୍ରନ୍ଥରେ ୩୬ତମ ରାଜା ହରିହର ଭଂଜଙ୍କ ପରେ ପୀତାମ୍ବର ଭଂଜ, କମଳାକ୍ଷ ଭଂଜ, ତ୍ରିବିକ୍ରମ ଭଂଜ ଓ ଗୋବିନ୍ଦ ଭଂଜ ଯଥାକ୍ରମେ ରାଜା ହୋଇଥିଲେ । ମାତ୍ର ଶ୍ରୀ ତାରଣୀଚରଣଙ୍କ ବଂଶବୃକ୍ଷରେ ହରିହର ଭଞ୍ଜଙ୍କ ୩୮ତମ ରାଜା ପୁତ୍ର ପାଟେଳ ଗୋପୀନାଥ ଭଞ୍ଜ ବୋଲି ଉଲ୍ଲେଖ ଅଛି ଓ ତାଙ୍କ ପରେ ଦେବେନ୍ଦ୍ର ଭଂଜ, ହୃଷୀକେଶ ଭଂଜ ଯଥାକ୍ରମେ ରାଜା ହେବା ପରେ ପୀତାମ୍ବର ଭଂଜ ରାଜା ହୋଇଥିଲେ ବୋଲି ଉଲ୍ଲେଖ ରହିଛି । ସେହିପରି ସୂର୍ଯ୍ୟମଣିଙ୍କ ବଂଶବୃକ୍ଷରେ ତ୍ରିବିକ୍ରମ ଭଞ୍ଜଙ୍କ ପରେ ଗଜେନ୍ଦ୍ର ଭଂଜ ରାଜା ହେଲେ ଓ ତାଙ୍କ ପରେ ଗୋପାଳ ଭଂଜ, ପାଟେଳ ଗୋପୀନାଥ, ରଣ ଭଂଜ, ଜଗନ୍ନାଥ ଭଂଜ, ପ୍ରତାପ ଭଂଜ, ବନମାଳୀ ଭଂଜ, ଗୋପୀନାଥ ଭଂଜ ଯଥାକ୍ରମେ ରାଜା ହେବା ପରେ ରାଜକବି ଧନଞ୍ଜୟ ଭଞ୍ଜ ରାଜା ହୋଇଥିବାର ଉଲ୍ଲେଖ ରହିଛି । ମାତ୍ର ଶ୍ରୀ ତାରଣୀଚରଣଙ୍କ ବଂଶବୃକ୍ଷରେ ତ୍ରିବିକ୍ରମ ଓ ଗଜେନ୍ଦ୍ର ଭଞ୍ଜଙ୍କ ମଧ୍ୟରେ ଗୋବିନ୍ଦ ଭଞ୍ଜ ବୋଲି ଅନ୍ୟ ଜଣେ ରାଜା ହେବାର ଦେଖାଯାଏ । ପୁଣି ଗୋପାଳ ଭଞ୍ଜ (୪୭ତମ ରାଜା)ଙ୍କ ପରେ ବନମାଳୀ ଭଞ୍ଜ, ଗୋପୀନାଥ ଭଞ୍ଜ ଯଥାକ୍ରମେ ରାଜା ହେବା ପରେ ଧନଞ୍ଜୟ ଭଞ୍ଜ ରାଜା ହୋଇଛନ୍ତି । ଧନଞ୍ଜୟ ଭଞ୍ଜଙ୍କ ପରେ ଉଭୟ ବଂଶବୃକ୍ଷରେ କୌଣସି ପାର୍ଥକ୍ୟ ପରିଦୃଷ୍ଟ ହୁଏ ନାହିଁ । ରାଜାମାନଙ୍କର ନାମରେ ଯେପରି ପାର୍ଥକ୍ୟ ରହିଛି ଠିକ୍ ସେହିପରି ସେମାନଙ୍କର ରାଜତ୍ୱ କାଳ ସମ୍ବନ୍ଧରେ ମଧ୍ୟ ପାର୍ଥକ୍ୟ ଦେଖାଯାଏ । ନିମ୍ନରେ ଶ୍ରୀ ତାରଣୀଚରଣ ରଥଙ୍କ ଦ୍ୱାରା ପ୍ରଦତ୍ତ ରାଜାମାନଙ୍କର କାଳ ସମ୍ବନ୍ଧୀ ସୂଚନା ଦିଆଗଲା

| | |
|---|---|
| ୧ ରଘୁନାଥ ଭଞ୍ଜ (ଖ୍ରୀ ୮୩୨-୫୨) | ୩ କେଶବ ଭଂଜ (୮୬୭-୮୫) |
| ୨ ଅର୍ଜୁନ ଭଞ୍ଜ (୮୫୨-୬୭) | ୪ ବନମାଳୀ ଭଂଜ (୮୮୫-୯୯) |

୫ ଗୋପାଳ ଭଂଜ
(୮୯୯-୯୨୨)

୬ ଗୋବିନ୍ଦ ଭଂଜ
(୯୨୨·୩୬)

୭ ଜଗନ୍ନାଥ ଭଂଜ
(୯୩୬-୪୭)

୮ ହରିକୃଷ୍ଣ ଭଂଜ
(୯୪୭-୫୭)

୯ ଗୋକୁଳ ଭଂଜ
(୯୫୭-୭୨)

୧୦ ଗୌରହରି ଭଂଜ
(୯୭୨-୯୨)

୧୧ କୃଷ୍ଣ ଭଂଜ
(୯୯୨-୧୦୦୮)

୧୨ ନୃସିଂହ ଭଂଜ
(୧୦୦୮-୨୬)

୧୩ ବଳଭଦ୍ର ଭଂଜ
(୧୦୨୬-୫୭)

୧୪ ମୁକୁନ୍ଦ ଭଂଜ
(୧୦୫୭-୭୩)

୧୫ ମଧୁସୂଦନ ଭଂଜ
(୧୦୭୩-୮୮)

୧୬ ନାରାୟଣ ଭଂଜ
(୧୦୮୮-୧୧୦୭)

୧୭ ହରିଧର ଭଂଜ
(୧୧୦୭-୨୨)

୧୮ ନରହରି ଭଂଜ
(୧୧୨୨-୪୦)

୧୯ ଜଗନ୍ନାଥ ଭଂଜ
(୧୧୪୦-୬୧)

୨୦ ମତ୍ତହସ୍ତୀ ଭଂଜ
(୧୧୬୧-୮୦)

୨୧ ପୁରୁଷୋତ୍ତମ ଭଂଜ
(୧୧୮୦-୯୦)

୨୨ ପ୍ରତାପ ଭଂଜ
(୧୧୯୦-୧୨୦୭)

୨୩ ଚକ୍ରଧର ଭଂଜ
(୧୨୦୭-୧୭)

୨୪ ହରିଶରଣ ଭଂଜ
(୧୨୦୭-୩୦)

୨୫ କପିଳ ଭଞ୍ଜ
(୧୨୩୦-୫୬)
|
୨୬ ଶ୍ରୀଧର ଭଞ୍ଜ
(୧୨୫୬-୭୨)
|
୨୭ ରାମଚନ୍ଦ୍ର ଭଞ୍ଜ
(୧୨୭୨-୯୩)
|
୨୮ ଲକ୍ଷ୍ମଣ ଭଞ୍ଜ
(୧୨୯୩-୧୩୦୮)
|
୨୯ ତ୍ରିଲୋଚନ ଭଞ୍ଜ
(୧୩୦୮-୧୩୨୬)
|
୩୦ ହରିସେବକ ଭଞ୍ଜ
(୧୩୨୬-୪୩)
|
୩୧ ଗଦାଧର ଭଞ୍ଜ
(୧୩୪୩-୫୮)
|
୩୨ ବୈଦ୍ୟନାଥ ଭଞ୍ଜ
(୧୩୫୮-୧୩୬୯)
|
୩୩ ଗିରିଧର ଭଞ୍ଜ
(୧୩୬୯-୮୮)
|
୩୪ କୃପାସିନ୍ଧୁ ଭଞ୍ଜ
(୧୩୮୮-୧୪୦୦)
|

୩୫ ପଦ୍ମନାଭ ଭଞ୍ଜ
(୧୪୦୦-୧୬)
|
୩୬ ମାଧବ ଭଞ୍ଜ
(୧୪୧୬-୩୧)
|
୩୭ କମଳଲୋଚନ ଭଞ୍ଜ
(୧୪୩୧-୪୪)
|
୩୮ ହରିହର ଭଞ୍ଜ
(୧୪୪୪-୫୮)
|
୩ ପାଟେଳ ଗୋପୀନାଥ ଭଞ୍ଜ
(୧୪୫୮-୮୦)
|
୪୦ ଦେବେନ୍ଦ୍ର ଭଞ୍ଜ
(୧୪୮୦-୯୬)
|
୪୧ ହୃଷୀକେଶ ଭଞ୍ଜ
(୧୪୯୬-୧୫୧୫)
|
୪୨ ପୀତାମ୍ବର ଭଞ୍ଜ
(୧୫୧୫-୩୬)
|
୪୩ ନଳନାକ୍ଷ ଭଞ୍ଜ
(୧୫୩୬-୪୮)
|
୪୪ ତ୍ରିବିକ୍ରମ ଭଞ୍ଜ
(୧୫୪୮-୫୮)
|

୪୫ ଗୋବିନ୍ଦ ଭଂଜ
(୧୫୫୮-୭୪)
|
୪୬ ଗଜେନ୍ଦ୍ର ଭଂଜ
(୧୫୭୪-୮୯)
(ରଣଭଞ୍ଜ)
|
୪୭ ଗୋପାଳ ଭଂଜ
(୧୫୮୯-୧୬୧୧)
(ପ୍ରତାପ ଭଞ୍ଜ)
|
୪୮ ବନମାଳୀ ଭଞ୍ଜ
(୧୬୧୧-୧୪)
|
୪୯ ଗୋପୀନାଥ ଭଂଜ
(୧୬୧୪—୩୬)
|
୫୦ ପ୍ରତାପ ଧନଞ୍ଜୟ ଭଂଜ
(୧୬୩୬-୧୭୦୧)
|
୫୧ ନୀଳକଣ୍ଠ ଭଞ୍ଜ
(୧୭୦୧-୧୭୦୩)
|
୫୨ ରଣଭଞ୍ଜ
(୧୭୦୩-୧୭୦୭)
|
୫୩ ଘନଭଞ୍ଜ
(୧୭୧୨-୫୪)
|
୫୪ କୃଷ୍ଣଭଞ୍ଜ
(୧୭୫୪-୭୩)
|
୫୫ ବିକ୍ରମ ଭଞ୍ଜ
(୧୬୭୩-୮୨)
|
୫୬ ଲକ୍ଷ୍ମଣ ଭଞ୍ଜ
(୧୭୮୨-୯୦)
|
୫୭ ଶ୍ରୀକର ଭଞ୍ଜ
(୧୭୯୦-୯୯)
(୧୮୧୯-୩୨)
|
୫୮ ଧନଞ୍ଜୟ ଭଞ୍ଜ
(୧୮୩୨-୧୮୩୫)
|
ବ୍ରଜରାଜ ଭଞ୍ଜ

"ଢ଼" ପୃଷ୍ଠାରେ ପ୍ରଦତ୍ତ ଚ୍ୟାଉ ପଟ୍ଟନାୟକଙ୍କ ବଂଶବୃକ୍ଷ ସହିତ ଉକ୍ତ ବଂଶବୃକ୍ଷ ତୁଳନୀୟ । ପାଠକମାନଙ୍କ ଅବଗତି ନିମନ୍ତେ ଏଠାରେ ନିମ୍ନଲିଖିତ ବିଷୟଟିକୁ ଉଦାହରଣ ସ୍ୱରୂପ ଧରି ନିଆଯାଇପାରେ । ଶ୍ରୀ ତାରଣୀଚରଣଙ୍କ ମତରେ ରାଜକବି ଧନଞ୍ଜୟ ଭଞ୍ଜ ୧୬୩୬ ଖ୍ରୀଷ୍ଟାବ୍ଦରୁ ୧୭୦୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜ୍ୟ ଶାସନ କରିଥିଲେ । ମାତ୍ର ସୂର୍ଯ୍ୟମଣି ଧନଞ୍ଜୟ ଭଞ୍ଜ ୧୬୩୨ରୁ ୧୬୯୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜ୍ୟ ଶାସନ କରିଥିଲେ ବୋଲି ଉଲ୍ଲେଖ କରିଛନ୍ତି । ଏଥିରୁ

କେଉଁଟି ବିଶେଷ ପ୍ରାମାଣିକ, ତାହା କହିବା ସମ୍ଭବପର ନୁହେଁ । ଅବଶ୍ୟ 'ଭଂଜ ବଂଶାବଳୀ' ଗ୍ରନ୍ଥରେ ସମୟର ସୂଚନା ଶକାବ୍ଦ ମାଧ୍ୟମରେ ଦିଆଯାଇଛି । ଶକାବ୍ଦ ଓ ଖ୍ରୀଷ୍ଟାବ୍ଦ ମଧ୍ୟରେ ଆମେ ସାଧାରଣତଃ ୭୮ ବର୍ଷ ଧରିନେଇ ଯାଇଥାଉ । କିନ୍ତୁ ତାକୁ ଯଦି ପିଲାଇଙ୍କ ଗଣନାଶାସ୍ତ୍ର An Indian Ephemeris by Pillai ଅନୁଯାଇ ବିଚାର କରାଯାଏ ତେବେ ଧନଂଜୟ ଭଂଜଙ୍କ ସମୟ ୧୭୦୧ ହୋଇଯାଇପାରେ । କାରଣ ପିଲାଇଙ୍କ ଗଣନା ଅନୁସାରେ ଖ୍ରୀଷ୍ଟାବ୍ଦ ଓ ଶକାବ୍ଦ ମଧ୍ୟରେ ୭୮ ବର୍ଷ ଏବଂ କେତେକ ଦିନ ଆସିଥାଏ । ସୁତରାଂ କବି ସୂର୍ଯ୍ୟମଣିଙ୍କ ସମୟ ଠିକ୍ ହୋଇଥାଇପାରେ ।

ଭଞ୍ଜବଂଶର ଧର୍ମ :

ବର୍ତ୍ତମାନ ଆଲୋଚ୍ୟ 'ଭଞ୍ଜ ବଂଶାବଳୀ' ଗ୍ରନ୍ଥରୁ ଭଞ୍ଜରାଜାମାନଙ୍କର ଧର୍ମଧାରା ଉପରେ କିଛି ଆଲୋକପାତ କରାଯାଉଅଛି । ଯେ କୌଣସି ବ୍ୟକ୍ତିଙ୍କର ଧର୍ମମତ ବିଚାର ପ୍ରସଙ୍ଗରେ ତାଙ୍କର ପରମ ଉପାସ୍ୟ ଦେବତାଙ୍କୁ ଭିତ୍ତି କରି ଆଲୋଚନା କରାଯାଇଥାଏ । ମାତ୍ର ଗୋଟିଏ ବଂଶର ଧର୍ମ ସବୁବେଳେ ଏକ ହେବା ସମ୍ଭବପର ନୁହେଁ । ଗୁମୁସର ଭଞ୍ଜବଂଶର ଏକମାତ୍ର ଇଷ୍ଟଦେବୀ ହେଉଛନ୍ତି କନକଦୁର୍ଗା । ଦୁର୍ଗା ସଦାସର୍ବଦା ଗଡ଼ ମଧ୍ୟରେ ପୂଜା ପାଇଥାନ୍ତି । ସେଥିପାଇଁ ଯେ ଅନ୍ୟ ଦେବତାମାନେ ପୂଜା ପାଉନଥିଲେ, ତାହା ନୁହେଁ । ଭଞ୍ଜବଂଶର ପ୍ରାୟ ସମସ୍ତ ନରପତି ବହୁ ବିଷ୍ଣୁ, ଶିବ ମନ୍ଦିର ନିର୍ମାଣ କରିଥିବାର ପ୍ରମାଣ 'ଭଞ୍ଜ ବଂଶାବଳୀ' ଗ୍ରନ୍ଥରୁ ମିଳିଥାଏ । ଓଡ଼ିଶାରେ ଯେତେବେଳେ ଚୈତନ୍ୟ ପ୍ରବର୍ତ୍ତିତ ବୈଷ୍ଣବ ଧର୍ମର ପ୍ରବାହ ବହି ଚାଲିଥିଲା ତାହା ଗୁମୁସରକୁ ବୋଧହୁଏ ସେତେ ଦୂର ପ୍ରଭାବିତ କରିପାରିନାହିଁ । ବରଂ ପକ୍ଷାନ୍ତରରେ ଗୁମୁସର ରାଜବଂଶର ବହୁ ରାଜା ରାମ ଉପାସକ ହୋଇପଡ଼ିଛନ୍ତି । କିମ୍ବଦନ୍ତୀ ରହିଛି ଯେ ଗୁମୁସର ରାଜବଂଶର କେତେକ ନରପତି ରାମାନନ୍ଦୀୟ ଶ୍ରୀ ବୈଷ୍ଣବ ସମ୍ପ୍ରଦାୟର ଶିଷ୍ୟତ୍ୱ ଗ୍ରହଣ କରିଥିଲେ ଯାହାର ଫଳରେ ରାଜକବି ଧନଞ୍ଜୟ ଭଞ୍ଜ ରାମ ସୀତା ଉପାସକ ଥିଲେ । କବିଙ୍କର 'ରଘୁନାଥ ବିଳାସ' କାବ୍ୟ ତାର ଜ୍ୱଳନ୍ତ ପ୍ରମାଣ । ପୁଣି ଭଞ୍ଜବଂଶର ଶ୍ରେଷ୍ଠ କବି, କବିକୁଳ ମଉଡ଼ମଣି, କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ହେଉଛନ୍ତି ରାମଭକ୍ତ । ତେଣୁ ତାଙ୍କର ଲେଖନୀରୁ ଝରିଆସିଥିଲା—

ତାରକ ମନ୍ତ୍ର ପରସାଦେ
ମୋହର କର୍ଣ୍ଣପଣ ଉଦେ ।"

କଥିତ ଅଛି ଉପେନ୍ଦ୍ର ଭଞ୍ଜ ରାମାନନ୍ଦୀୟ ଶ୍ରୀ ବୈଷ୍ଣବ ସମ୍ପ୍ରଦାୟର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସେ ଥିଲେ ବଶିଷ୍ଠାଦ୍ୱୈତବାଦୀ ଓ ପୁରୀ ଗୁଉଁଣୀ ମଠ (ସିଂହଦ୍ୱାର)ର ତତ୍କାଳୀନ ଗୁରୁ ଶ୍ରୀ ଶ୍ରୀ ରଘୁବର ଦାସଙ୍କ ଶିଷ୍ୟ । ଏହାର ପ୍ରମାଣ ମଧ୍ୟ ବର୍ତ୍ତମାନ ଉକ୍ତ ମଠରେ ରହିଥିବା ଅପ୍ରକାଶିତ ତାଳପତ୍ର ଗ୍ରନ୍ଥରୁ ସୁସ୍ପଷ୍ଟ । ରଘୁବର ଦାସ ଜଣେ ଗୁଜରାଟି ସାଧୁ ଥିଲେ । ସେ ଗୁଜରାଟର ସିଦ୍ଧପୁର, ବନ୍ଦୁ ସରୋବର ନିକଟବର୍ତ୍ତୀ କର୍ଦ୍ଦମ ମୁନି ଆଶ୍ରମରୁ ପୁରୀ ଆସିଥିଲେ । ସେ ଗଜପତି ଦିବ୍ୟସିଂହ ଦେବ (୧୬୮୮-୧୭୧୬)ଙ୍କ ରାଜତ୍ୱର ପ୍ରାରମ୍ଭ କାଳରେ ପୁରୀ ଆସି ନିଜର ଅଲୌକିକ ପ୍ରତିଭା ବଳରେ ଦିବ୍ୟସିଂହ ଦେବଙ୍କୁ ନିଜର ଶିଷ୍ୟ କରିପାରିଥିଲେ । ଗଜପତି ଗୁରୁଙ୍କ ଆଦେଶକୁ ଖଣ୍ଡନ କରିନପାରି ବଡ଼ଦେଉଳ ସିଂହଦ୍ୱାରର ଦକ୍ଷିଣ ପାର୍ଶ୍ୱରେ ଏକ ମଠ ସ୍ଥାପନ କରିବା ପାଇଁ ସ୍ଥାନ ଦେଇଥିଲେ । ସାଧୁଙ୍କର ମହାମାନ୍ୟତା ତତ୍କାଳୀନ ସମୟରେ ଓଡ଼ିଶାର ସମସ୍ତ ସ୍ତରରେ ପ୍ରଚାରିତ ହୋଇସାରିଥିଲା ଓ ଓଡ଼ିଶାର ବହୁ ବ୍ୟକ୍ତି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରୁଥିଲେ । ସେତେବେଳେ ଉପେନ୍ଦ୍ର ଭଞ୍ଜ ନିଜ ପିତା ନୀଳକଣ୍ଠ ଭଞ୍ଜଙ୍କ ସହିତ ରାଜ୍ୟରୁ ବିତାଡ଼ିତ ହୋଇ ନୂଆଗଡ଼ ମାଳିସାହି ଗ୍ରାମରେ ଅବସ୍ଥାନ କରୁଥିଲେ । ପୁଣି ଉକ୍ତ ଗ୍ରାମର ପ୍ରାୟ ଅଧିକାଂଶ ବ୍ୟକ୍ତି ସେତେବେଳକୁ ରଘୁବର ଦାସଙ୍କ ଶିଷ୍ୟତ୍ୱ ଗ୍ରହଣ କରି, ଗ୍ରାମରେ ଗୋଟିଏ ମଠ ସ୍ଥାପନ କରିଥିଲେ । ଉପେନ୍ଦ୍ର ଭଞ୍ଜ ଉକ୍ତ ମଠରେ ଯାଇ ରହୁଥିଲେ ଓ ସେ ସେହି ସମୟରେ ହିଁ ସେ ରାମାନନ୍ଦୀୟ ଶ୍ରୀ ବୈଷ୍ଣବ ସମ୍ପ୍ରଦାୟ ଅନ୍ତର୍ଭୁକ୍ତ ହୋଇଥିଲେ । ଉପେନ୍ଦ୍ର ପୁରୀ ଯାଇ ରଘୁବର ଦାସ ମହାରାଜଙ୍କଠାରୁ ତାରକମନ୍ତ୍ର ଗ୍ରହଣ କରିଥିଲେ । * ଏହି ସମସ୍ତ ପରିପ୍ରେକ୍ଷୀରେ ବିଚାର କଲେ ଜଣାଯାଏ ଯେ ଉପେନ୍ଦ୍ର ଭଞ୍ଜ ହେଉଛନ୍ତି ଜଣେ ବଶିଷ୍ଠାଦ୍ୱୈତବାଦୀ ବୈଷ୍ଣବ । ଫଳରେ ରାଜପୁତ୍ର ହେଲେ ହେଁ ତାଙ୍କ ମସ୍ତକରେ ଊର୍ଦ୍ଧ୍ୱ ପୁଣ୍ଡ୍ର (ରାମାନନ୍ଦୀ) ତିଳକ ଧାରଣ କରିଥିବାର ସମ୍ଭାବନା ବେଶି । ମାତ୍ର ଅତୀବ ଦୁଃଖର କଥା ଯେ ବର୍ତ୍ତମାନ ଯେଉଁ କେତୋଟି ଭଞ୍ଜ ପ୍ରତିମୂର୍ତ୍ତି ଦୃଷ୍ଟିଗୋଚର ହେଉଛି ସେଥିରେ ବାଳକ କୃଷ୍ଣ ଉପାସକ ବଲ୍ଲଭାଚାର୍ଯ୍ୟ ସମ୍ପ୍ରଦାୟର ତିଳକ ହିଁ ଦିଆଯାଇଥାଏ,

* ଅପ୍ରକାଶିତ ତାଳପତ୍ର ଗ୍ରନ୍ଥ ପୁରୀ ଗୁଉଁଣୀ ମଠରେ ରହିଛି ।

ଯାହା କି ଅଯୌକ୍ତିକ କହିଲେ ଅତ୍ୟୁକ୍ତି ହେବନି । ଉପେନ୍ଦ୍ର ଭଂଜ ରାମ ଉପାସକ ହୋଇ କୃଷ୍ଣ ତିଳକ କପରି ମସ୍ତକରେ ଧାରଣ କରିଥିଲେ ତାହା ସୁଧୀ ସମାଜ ବିଚାର କରିବାର କଥା । ଉପେନ୍ଦ୍ର ଭଂଜ ତାରକମନ୍ତ୍ର ସିଦ୍ଧ ଥିଲେ ଓ ସୀତାରାମ ହେଉଛନ୍ତି ତାଙ୍କର ଉପାସ୍ୟ ଦେବତା । ଆଲୋଚକ ଶ୍ରୀ ଅନନ୍ତପଦ୍ମନାଭ ପଟ୍ଟନାୟକ ତାଙ୍କର 'କବିସମ୍ରାଟ ଉପେନ୍ଦ୍ରଭଂଜ' ଆଲୋଚନା ଗ୍ରନ୍ଥର ୧୨ ପୃଷ୍ଠାରେ ଉଲ୍ଲେଖ କରିଛନ୍ତି ଯେ -- "ବାଲ୍ୟାବସ୍ଥାରେ ସେ ଉପେନ୍ଦ୍ର ) ଥରେ ରଘୁନାଥ ନାମକ ଜଣେ ବୈଷ୍ଣବ ଦେଖିଲେ । ଅନେକ ସମୟରେ ରାଜଦ୍ୱାରକୁ ଯାଚଞ୍ଚା ଉଦ୍ଦେଶ୍ୟରେ ଅନେକ ସନ୍ନ୍ୟାସୀ ଆସନ୍ତି । ତାହାଙ୍କୁ ମଧ୍ୟ ସେହିପରି ଜଣେ ଯାଚକ ସନ୍ନ୍ୟାସୀ ବୋଲି ଭାବି, ବାଳକ ଉପେନ୍ଦ୍ର ସେହିଆଡ଼କୁ ତେତେ ଦୃଷ୍ଟି ଦେଲେ ନାହିଁ । କିନ୍ତୁ ସନ୍ନ୍ୟାସୀ ଅବସର ବେଳେ ଉପେନ୍ଦ୍ରଙ୍କୁ ତାରକ ମନ୍ତ୍ରର ମହାମାହାତ୍ମ୍ୟ ଇଙ୍ଗିତ ଦେଲେ । ସେହି ମୁହୂର୍ତ୍ତରୁ ମନ୍ତ୍ର ସାଧନ ପାଇଁ ତାଙ୍କ ହୃଦୟ ପ୍ରବଳ ବ୍ୟାକୁଳତା ଜାଗରୂକ ହେଲା ।" ଏହି ଉଦ୍ଧୃତି ଦେବାର କାରଣ ହେଉଛି ଯେ ଉକ୍ତ 'ରଘୁନାଥ' ହେଉଛନ୍ତି ଶ୍ରୀ ଶ୍ରୀ ରଘୁନାଥ ଦାସ, ଶ୍ରୀ ରଘୁବର ଦାସଙ୍କ ପ୍ରଧାନ ଶିଷ୍ୟ । ଉପେନ୍ଦ୍ର ରଘୁନାଥ ଦାସଙ୍କ ମାଧ୍ୟମରେ ହିଁ ଶ୍ରୀ ରଘୁବର ଦାସଙ୍କଠାରୁ ତାରକମନ୍ତ୍ର ଗ୍ରହଣ କରିଥିଲେ । ଏତଦ୍ ବ୍ୟତୀତ ଉକ୍ତ ସନ୍ନ୍ୟାସୀଙ୍କଠାରୁ ଗଜପତି ବୀରକେଶରୀ ଦେବ, ସୂର୍ଯ୍ୟମଣି ପାଟ ମହାଦେଈ ଓ ଅନ୍ୟ ବହୁ ରାଜା ଶିଷ୍ୟତ୍ୱ ଗ୍ରହଣ କରିଥିଲେ। ପରବର୍ତ୍ତୀ ସମୟରେ ଶ୍ରୀ ରଘୁବର ଦାସଙ୍କ ଶିଷ୍ୟ ଶ୍ରୀ ରାଜୀବଲୋଚନ ଦାସ ଗୁମୁସର ଆସି ଭଞ୍ଜରାଜାଙ୍କଠାରୁ ସ୍ଥାନ ପାଇ କୁଲାଡ଼ଗଡ଼ରେ ରଘୁନାଥ ମଠ ସ୍ଥାପନା କରିଥିଲେ । ଉପେନ୍ଦ୍ରଭଂଜଙ୍କ ପରେ ମଧ୍ୟ ଭଂଜ ରାଜବଂଶ ରାମ ଉପାସକ ହୋଇଥିବାର ପ୍ରମାଣ ଗୁମୁସରର ମନ୍ଦିରମାନଙ୍କରୁ ଜଣା ଯାଇଥାଏ । ମହାରାଜା କୃଷ୍ଣଭଞ୍ଜ, ଲକ୍ଷ୍ମଣ ଭଂଜ ଓ ଶ୍ରୀକର ଭଂଜଙ୍କ ସମୟରେ ବହୁ ମନ୍ଦିର ନିର୍ମାଣ ହୋଇଥିଲା । ସେଗୁଡ଼ିକରେ ସୀତାରାମ ଉପାସନା ଅଦ୍ୟାବଧି ଚାଲିଛି । ଶ୍ରୀକର ଭଞ୍ଜଙ୍କ ରାଜତ୍ୱ ସମୟରେ ବୁଗୁଡ଼ା ଦୁର୍ଗ ମଧ୍ୟରେ ଏକ ମଠ ସ୍ଥାପିତ ହୋଇ, ସେଠାରେ ବରଞ୍ଜିନାରାୟଣ ଓ ସୀତାରାମ ପ୍ରତିଷ୍ଠା ହୋଇଥିଲେ । ଏତଦ୍ ବ୍ୟତୀତ ନେଟେଙ୍ଗା ରଘୁନାଥ ମନ୍ଦିର, ଜଗନ୍ନାଥପ୍ରସାଦ ରଘୁନାଥ ମଠ ଓ ଗୁମୁସର ମଧ୍ୟରେ ବହୁ ରଘୁନାଥ ମନ୍ଦିର ବର୍ତ୍ତମାନ ଦେଖାଯାଇଥାଏ । ଶ୍ରୀକର ଭଞ୍ଜ ଜଣେ ପରମ ବୈଷ୍ଣବ ଥିଲେ ଓ ତାଙ୍କର ଶେଷ ଜୀବନ ଅଯୋଧ୍ୟାରେ ରାମ ଉପାସନା କରି କଟିଥିଲା । କାରଣ ପୁରୀ କୋର୍ଟରୁ ପ୍ରମାଣ

ମିଳେ ଯେ ୧୮୪୫ ଖ୍ରୀଷ୍ଟାବ୍ଦରେ ଶ୍ରୀକର ଭଞ୍ଜ ଅଯୋଧ୍ୟାରେ ଦେହତ୍ୟାଗ କରିଥିଲେ ।

## ଭାଷା :

ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ 'ଭଞ୍ଜ ବଂଶାବଳୀ' ବିଭିନ୍ନ ରାଗରାଗିଣୀ ସମ୍ବଳିତ ଚଉଦ ଗୋଟି ଛାନ୍ଦରେ ରଚିତ । ପ୍ରତ୍ୟେକ ଛାନ୍ଦରେ ସାଙ୍ଗୀତିକତା ଯଥେଷ୍ଟ ମାତ୍ରାରେ ରହିଛି । ଏହାର ଭାଷା ସରଳ ଓ ନିରାଡ଼ମ୍ବର । ଅଳଙ୍କାରର ବାହୁଲ୍ୟ, ବର୍ଣ୍ଣନାର ଘନଘଟା, କ୍ଳିଷ୍ଟ ଶବ୍ଦ ସଂଯୋଜନ ଓ କଳ୍ପନା ବୈଚିତ୍ର୍ୟ ଏଥିରେ ପ୍ରାୟ ଦେଖାଯାଏ ନାହିଁ । ବ୍ୟବହୃତ ଭାଷାରେ ହିଁ କବି ସୂର୍ଯ୍ୟମଣି ଆଲୋଚ୍ୟ ଗ୍ରନ୍ଥଟିକୁ ରଚନା କରିଛନ୍ତି । ଏହି ଗ୍ରନ୍ଥରେ ବ୍ୟବହୃତ ଶବ୍ଦମାନଙ୍କ ମଧ୍ୟରେ ବହୁ ଇଂରେଜ ଶବ୍ଦ, ଯାବନିକ ଶବ୍ଦ ଓ ଦେଶ୍ୟ ଶବ୍ଦ ଦୃଷ୍ଟିଗୋଚର ହୋଇଥାଏ । ଇଂରେଜ ଶବ୍ଦଗୁଡ଼ିକ ମଧ୍ୟରେ ଜଉଜ (Judge), କଲକଟର ଜଇନାତ୍ତ (Join), ରପଟ (Report), ଗୌନରମେଣ୍ଟ (Government), କୁମ୍ପାନି (Company) ଇଙ୍ଗ୍ରୁଜ ଆଦି ଶବ୍ଦ ଅନ୍ୟତମ । ସେହିପରି ଯାବନିକ ଶବ୍ଦମାନଙ୍କ ମଧ୍ୟରେ ଫରମାନ୍, ଫିରାଦ, ଇନାମ୍, ଦହି, ମୁକାମ୍, ଫିତୁର୍, ହକକତ୍, ଅରମାନ, ମାମିଲତ୍, ଫରମାସ ଆଦି ପ୍ରଧାନ । ଦେଶ୍ୟ ତଥା ଅପ୍ରଚଳିତ ଶବ୍ଦଗୁଡ଼ିକ ହେଉଛି—ଶଡୋଲ, ଚୁହାଣ, ଉପ୍ରୋଧ, ନଶରେ, ନିର୍ଭା, ଡକତ, ବାଇବାଉ, ବାରିବାରେ, ଖେଉଦବା, ମୁକୁଶାଳୀ, ଓକ, ଅଗେରେ, ବାହା, ଝୋଟୋକା, ସଧାଇ, ନଆଜ ଇତ୍ୟାଦି ।

ଆଲୋଚ୍ୟ ଗ୍ରନ୍ଥ ମଧ୍ୟରୁ ଭଞ୍ଜ ବଂଶାବଳୀ ସମ୍ପର୍କରେ ଯେଉଁ ସଙ୍କେତ ମିଳେ, ତାହା ଓଡ଼ିଶାର ବିଶେଷ କରି ଗଞ୍ଜାମର ଏକ ପ୍ରସିଦ୍ଧ ରାଜବଂଶର ଇତିହାସ । ଏହା ମଧ୍ୟରେ ବହୁ ଐତିହାସିକ ତଥ୍ୟ ଗୁପ୍ତ ଭାବରେ ସଂରକ୍ଷିତ ହେବାର ଜଣାଯାଏ । ଏ ସବୁର ସତ୍ୟ ଉଦ୍‌ଘାଟନ ହୋଇପାରିଲେ ଓଡ଼ିଶାର ପୂର୍ଣ୍ଣାଙ୍ଗ ଇତିହାସ ରଚନା ହେଲା ବେଳେ ଏହାର ଭୂମିକା ଯଥେଷ୍ଟ ବିବେଚିତ ହେବ, ଏଥିରେ ସନ୍ଦେହ ନାହିଁ ।

ଶ୍ରୀ ଦୁର୍ଗାମାଧବ ନନ୍ଦ

# ଭଞ୍ଜ ବଂଶାବଳୀ

## ପ୍ରଥମ ଛାନ୍ଦ

[ ରାଗ—ଚୋଖି ]

ଶୁଣ ସଂଖ୍ୟାବାନ ଜନ ମୋ କହିବାର ବଚନ
ଭଞ୍ଜରାଜାମାନଙ୍କର ପୂର୍ବ ଚରିତ
ତ୍ରେତାଯୁଗ ପ୍ରାନ୍ତେ ଦିନେ ବଶିଷ୍ଠ ମହର୍ଷି ମନେ
ପୁଷ୍କର ରାଜ ତୀର୍ଥକୁ ହେଲେ ଆଗତ
ହୋଇଅଛି ବରଷା କାଳ
କୋକ ଡାହୁକ ମଲ୍ଲାଳ ଡାକ ଚହଳ । ୧ ।

ସେ ତଟରେ ମୃଗମୃଗୀ ହୋଇ ଅଙ୍କେ ଅଙ୍କ ସଙ୍ଗୀ
ଅନଙ୍ଗ ରଙ୍ଗରେ ଦୁହେଁ ପ୍ରବର୍ତ୍ତି ଥିଲେ
ଋଷିଙ୍କ ଶ୍ରେଷ୍ଠ ଗରିଷ୍ଠ ଅଟନ୍ତି ତପୋବନସ୍ଥ
ବେନି ନେତ୍ର ତାଙ୍କର ତହିଁରେ ପଡ଼ିଲେ
କନ୍ଦର୍ପ ତ ଅଟେ ନିଦାର
ପ୍ରୟୋଗ କଲା ଉନ୍ମାଦ ମୋହନ ଶର । ୨ ।

ସେ ଅଙ୍କରେ ଯାନ୍ତେ ବ୍ୟାପି ହୋଇଲେ ଅତି ସନ୍ତାପି
ଧଇର୍ଯ୍ୟ ନରହି ବୀର୍ଯ୍ୟ ସ୍ଖଳନ ହେଲା
ସ୍ନାନସାରି ସେ କୌପୀନ କରନ୍ତେ ତହିଁ କ୍ଷାଳନ
ବନଚରେ ସେ ବେନି ବିନ୍ଦୁ ହୋଇ ଭାସିଲା
ମୟୂରମୟୂରୀ ଏ ମତ
ହୋଇ ସେ ଜଳସ୍ଥାନେ ହେଲେ ଉପଗତ । ୩ ।

ତୃଷାରେ ହୋଇ ଆରତ ମୟୂରୀ ଜଳ ସହିତ
ବେନି ରେତବିନ୍ଦୁ ତତ୍କାଳେ ସେ ପିଇଲା
ସେହିକ୍ଷଣି ସେ ମୟୂରୀ ଗର୍ଭରେତ ବିନ୍ଦୁ ଧରି
ସଦ୍ୟ ସେ ବେନି ଡିମ୍ବକୁ ଜନମ କଲା
ସେହି ତୀର୍ଥ ପଡ଼ଟ ପକାଇ -
ଅନ୍ତର ହୋଇଲା ଲବ ମାତ୍ର ନରହି । ୪ ।

ସେ ବଶିଷ୍ଠ ଋଷିବର — ଦେଖୁଥିଲେ ନୟନର
ବେନ ଡ଼ମ୍ବକୁ ପକାଇ ଯିବାର ଯେହ୍ନେ
ବିଚାରିଲେ ସେ ମାନସ — ଆମ୍ଭ ସାର୍ଯ୍ୟ କରି ଗ୍ରାସ
ବେନ ଡ଼ମ୍ବ ଜାନ୍ତ କରି ଗଲା ସେ କାହିଁ
ଆମ୍ଭେ ପାଳନାକୁ ନକଲେ
ଆମ୍ଭର ଏଥୁ ପାତକ ହୋଇବ ଭଲେ । ୫ ।

ଏତେ ଭାବି ଉପଚାରି — ବେନ ଡ଼ମ୍ବ କରେ ଧରି
ଆପଣା ଆଶ୍ରମ ପରବେଶ ହୋଇଲେ
ଦିନକରର କରରେ — ରଖିଲେ ନେଇ ପହରେ
ରଜନୀରେ କସି ବୃକ୍ଷକୋଟେ ରଖିଲେ
ଏହି ରୂପେ ପ୍ରତି ଦିବସ
ରଜନୀରେ ବେନ ସ୍ଥାନେ ମୁନିଙ୍କ ଈଶ । ୬ ।

ରଖନ୍ତେ ସେ କେତେ ଦିନ — ଉତ୍ତାରୁ ଏକ ନନ୍ଦନ
ଏକ ଡ଼ମ୍ବ ଫାଟିକରି ଜନମ ହୋଇଲା
ଜାତକର୍ମମାନ ଋଷି — କଲେ ହୋଇ ଅତି ତୋଷି
ସେ ଉତ୍ତାରୁ କେତେ ନିଶି ଦିବସ ଗଲା
ବାଳାକୁ ବସ... ସେରେ
ଶୁଆଇ କ୍ଷୀର ପାନକୁ ଦେଲେ ନିତ୍ୟରେ । ୭ ।

ତହିଁରୁ ସେ ଏକ ପୋତ — ରହିଲା ଯେହ୍ନେ ସଞ୍ଜାତ
କଣ୍ଟୁ ଜନମ ନୋହିଲା ଋଷି ଭାବିଲେ
କରେ ଧରି ଏକ ଦଣ୍ଡ — ଭଞ୍ଜନ କଲେ ସେ ଅଣ୍ଡ
ତହିଁରୁ ଏକ କୁମର ଜନ୍ମ ଲଭିଲେ
ତା ଦେଖି ମୁନିବର ମୋଦେ
ବେନକୁମର ପାଳନା କଲେ ପ୍ରମୋଦେ । ୮ ।

ସୂର୍ଯ୍ୟକରଣରେ ପାକ — ହେବାରୁ ସେ ଡ଼ମ୍ବ ଏକ
ମୂର୍ତ୍ତିକୁ ମଦନରାଣୀ ନାମକୁ ଦେଲେ
ଦଣ୍ଡରେ ଏକ ଭଞ୍ଜନ — କରନ୍ତେ ହୋଇନ୍ତେ ନନ୍ଦନ
ମୋହର ମୋଦକଭଞ୍ଜ ନାମ ବୋଇଲେ

ଏ ରୂପେ ଗଲା କେତେ କାଳ
(୧) ଶତୋଲ ଦେଶରେ ସେ ହୋଇଲେ ଭୂପାଳ । ୯ ।

(୨) ଚୁହାଣ ବେନ କନ୍ୟାଙ୍କୁ    ଦେଲେ ଦୁହେଁ ବିବାହକୁ
ତହିଁରେ ତାଙ୍କର ବଂଶ ବର୍ଦ୍ଧନ ହେଲା
ଏ ରୂପେ କେତେ ପୁରୁଷ    ହୋଇଗଲା ତହିଁ ଶେଷ
ରାଣାଭଞ୍ଜଙ୍କର ମନ ଏକ ନୋହିଲା
ଭଙ୍ଗେ ହରିହର ପୁରକୁ
ଆସି ନୃପ ହେଲେ ଶୁଣ ସେ ଚରିତକୁ । ୧୦ ।

ବେନ ଶତ କୋଶ ମହୀ    ଅଟଇଟି ଜାଣ ସେହି
ଭଞ୍ଜଭୂମି ବୋଲି ପୁଣ ନାମ ତାହାର
ଏବେ ହେ ବୋଲନ୍ତି ଜନ    ଶୁଣିମା ହୋଇ ସୁଜନ
ଭଞ୍ଜରାଜାଙ୍କର ହେଲେ ବେନ କୁମର
କାଳ ରେତାଙ୍କର ବିରୋଧ
ଜାତ ହେଲା ମାନସରୁ ଗୁଡ଼ ଉପ୍ରୋଧ । ୧୧ ।

ସେ ରାଜ୍ୟକୁ ବେନ ଭାଗ    କରି ବାଣ୍ଟିଲେ ସେ ଆଗ
ଜ୍ୟେଷ୍ଠଭ୍ରାତ ବଂଶ ଶତ କୋଶ ଧରଣୀ
ରଖି କନିଷ୍ଠ ଭ୍ରାତକୁ    ଅଶିତି କୋଶ ରାଜ୍ୟକୁ
ଦେଇଣ ତାଙ୍କୁ କରାଇଲେ ହେ ନୃପତି
କେନ୍ଦୁଝର ନାମ ତାହାର
ଦେଲେ ସେ ରାଜ୍ୟକୁ ଭଞ୍ଜ ନୃପତିବର । ୧୨ ।

ଏହି ରୂପେ କେତେ କାଳ    ହୁଅନ୍ତେ ତହିଁ ଭୂପାଳ
ତାହାଙ୍କର ଦାଦ ଜଣେ ଗୃହରେ ଥିଲେ
ତାହାଙ୍କର ଅଭିଧାନ    ଦଇତ୍ୟାରି ଭଞ୍ଜ ଜାଣ
ବେନକୁମର ତାଙ୍କର ଜନମ ହେଲେ
ତାହାଙ୍କ ନାମ ବନମାଳୀ
ରଘୁନାଥ ଭଞ୍ଜ ନାମ ହୋଇଲା ଝଳି । ୧୩ ।

---

(୧) ଛତୋର । (୨) ଚୌହାନ ।

ନୃପଙ୍କ ସଙ୍ଗେ ତାଙ୍କର ବଡ଼ବୋଧ ହୁଅନ୍ତେ ଘୋର
ବେନକୁମରଙ୍କୁ ଘେନ ତହୁଁ ଆସିଲେ
ସଙ୍ଗେ ତାଙ୍କ ସାତ ଘର ବାହାର ଆସିଲେ ଖର
ବଉଦ ରାଜ୍ୟରେ ଆସି ପ୍ରବେଶ ହେଲେ
ବଉଦରେ କାଶ୍ୟପ ଗୋତ୍ରୀ
ନନ୍ଦ ବ୍ରାହ୍ମଣ ହୋଇଥିଲେ ନରପତି । ୧୪ ।

ତାଙ୍କଠାରେ ଦେଖା ହୋଇ ସମ୍ଭାବନାକୁ ସେ ପାଇ
ବେନକୁମରଙ୍କୁ ଘେନ ସୁଖେ ରହିଲେ
ସେ ବଉଦ ନୃପତିଙ୍କର ନୋହିଥିଲେ ଯେ କୁମର
ଦଇତ୍ୟାରି ଭଞ୍ଜଙ୍କୁ ସେ ସୁତ ମାଗିଲେ
ପୋଷ୍ୟପୁତ୍ର କରିବୁ ବୋଲି
ଦଇତ୍ୟାରି ଭଞ୍ଜ ଦେଲେ କିଛି ନ ଭାଳି ୧୫ ।

ସେ ବେନ ପୁତ୍ରଙ୍କୁ ଆଣି ଆପଣା ଗୋତ୍ରରେ ପୁଣି
ମିଶାଇ ଦ୍ୱିଜ ନୃପତି ବ୍ରତକୁ କଲେ
ବନମାଳୀ ରଘୁନାଥ ଭଞ୍ଜ ନାମରେ ବିଖ୍ୟାତ
ବେନକୁମର ହୋଇଲେ ସର୍ବେ ଜାଣିଲେ
ସେ ଉତ୍ତାରୁ ସେ ଦ୍ୱିଜଙ୍କର
କନିଷ୍ଠ (୧) ପ୍ରମଦାଠାରେ ହେଲା କୁମର । ୧୬ ।

ବିନାୟକ ବୋଲି ନାମ ଦେଲେ ସେ ଦ୍ୱିଜ ଉତ୍ତମ
ଭଞ୍ଜ ବେନସୁତ ସଙ୍ଗେ ସେ ସଙ୍ଗୀ ହୋଇ
ବାଳକ ଲୀଳାମାନଙ୍କୁ କରି ସାରନ୍ତି ଦିନକୁ
ଏହି ରୂପେ କେତେ ସମ୍ବତ୍ସର ହିଁ ଯାଇ
ଅଶ୍ୱ, କରୀ ଚଢ଼ି ତିନ ହେଁ
ବୁଲି (୨) ଯାଆସ ହୁଅନ୍ତି ଅତ୍ୟନ୍ତ ସ୍ନେହେ । ୧୭ ।

ଏକ ଦିନେ ତିନ ଜଣ କରୀ ତରି ଆରୋହଣ
ଗ୍ରାମ ଅନ୍ତର ପଦାରେ ବୁଲୁ ଯେ ଥିଲେ

---

(୧) ସୁନ୍ଦରୀ ନାରୀ । (୨) ଯିବାଆସିବା ।

ବ୍ରାହ୍ମଣ ସୁତକୁ ଧରି　　　　ପକାଇ ଦିଅନ୍ତେ କରୀ
ପାଦେ ଚକଟନ୍ତେ ପ୍ରାଣ ଯତ୍ନରେ ଗଲେ
ଭଞ୍ଜ ବେନି ସୁତେ ବାହୁଡ଼ି
ଦ୍ୱିଜ ନୃପ ଆଗେ କାନ୍ଦି କହିଲେ ପଡ଼ି । ୧୮ ।

ବିନାୟକ ଆମ୍ଭେ ବେନି　　　　କରୀ ପୃଷ୍ଠେ ବସି ତନ୍ଦ
କଉତୁକେ ବୁଲି ଯାଉଥିଲୁ ଦାଣ୍ଡରେ
ପଦାରେ ସେ ବିନାୟକ　　　　ପଡ଼ି ହାରିଲା ବିବେକ
ସେ କରୀ ଚକଟି (୧) ଦେଲା ନିଜ ପାଦରେ
ଏହା ଶୁଣି ନନ୍ଦ ନୃପତି
ଜ୍ଞାନ ହାରିଣ ତତ୍କାଳେ ପଡ଼ିଲେ କ୍ଷିତି । ୧୯ ।

କ୍ଷଣକରେ ଚେତା ପାଇ　　　　ଉଠି ସେ ଦୁହିଁଙ୍କି କହି
ବିନାୟକ ଯେବେ ହାତୀରୁ ପଡ଼ିଥିବ
ତେବେ ତୁମ୍ଭ ଦୁହିଁଙ୍କର　　　　ଦୋଷ ନାହିଁଟି ବିକୃତ
ଯେବେ ତୁମ୍ଭେ ଜାଣି ତାକୁ ପକାଇଥିବ
ଆମ୍ଭେ ତୁମ୍ଭଙ୍କୁ ପୋଷ୍ୟ ସୁତ
କରି ଅଛୁକ କରିବୁ ବିଗୃହ ଶତ । ୨୦ ।

ଆମ୍ଭର ଶାପକୁ ଘେନ　　　　ହେବ ତ ତୁମ୍ଭେ ଗ୍ରାଜନ
ଭାଇ ଭାଇରେ ବିରୋଧ ତୁମ୍ଭର ହେବ
ପିତା ପୁତ୍ରରେ ବିବାଦ　　　　ହୋଉଥିବ ଭାବ ଦ୍ୱନ୍ଦ
ଅକର୍ତ୍ତବ୍ୟ କଥା ନ ବିଚାରି କରିବ
ପଛେ ଜାତ ହେବ ବିବେକ
ଏହି ରୂପେ ହେବ ତୁମ୍ଭ ଅନ୍ୟାୟ ଯାକ । ୨୧ ।

ଏ ରୂପେ ଶାପକୁ ଦେଇ　　　　ସେ ବ୍ରାହ୍ମଣ ନରସାଇଁ
କେତେ ଦିନ ଉତ୍ତାରୁ ହେଲେ ପରଲୋକ
ଜ୍ୟେଷ୍ଠଭ୍ରାତ ବନମାଳୀ　　　　ଭଞ୍ଜ ସେ ମହୀକ ପାଳି
ଭୋଗକଲେ ସୁଖେ ଥିବା ସମ୍ପତ୍ତି ଯାକ

(୧) ବର୍ତ୍ତମାନ୍ତୁ ଏହି ସ୍ଥାନଟି 'ଜଟଣି' ନାମରେ ପରିଚିତ । ଏହା ବଉଦଠାରୁ ପ୍ରାୟ ଆଠ ମାଇଲ ଦୂରରେ ଅବସ୍ଥିତ ।

କନିଷ୍ଠ ଭ୍ରାତ ରଘୁନାଥ
ଭଂଜ ନିରନ୍ତର ଥାନ୍ତି ତାହାଙ୍କ ସାଥ । ୨୨ ।
ବାରଣଜାତେନ୍ତ ଶରଣ                    କଲେ ଯେ ତାପ ବାରଣ
ତାଙ୍କ ଅରୁଣଚରଣ ମାନସେ ଧ୍ୟାୟି
ଦ୍ୟୁମଣିମଣି ଛଆଉ                    କହଇ ମୋ ଗତି ଆଉ
ସେ ବିନା ମୋ ସଂସାରରେ କେହି ତ ନାହିଁ
ଏହିଠାରେ ପ୍ରଥମ ଛାନ୍ଦ
ଶେଷ ହେଲା ଦୋଷ ନ ଘେନିବ କୋବିଦ । ୨୩ ।

---

# ଦ୍ୱିତୀୟ ଛାନ୍ଦ

[ ରାଗ—ମାଳବ ]

ଶୁଣ ହେ ସୁଜନ ହୋଇ ସାବଧାନ ଭଞ୍ଜବଂଶର ଚରିତ
ବିଶେଷ କହିଲେ ବହୁତ ହୋଇବ କରିବା ସଂକ୍ଷେପ ଉକ୍ତ । ୧ ।
ବଉଦ ରାଜ୍ୟରେ ବନମାଳୀ ଭଞ୍ଜେ ନୃପ ହେବା ସମୟରେ
ଗୁମୁସର ବୋଲି ନାମ ଖ୍ୟାତ ନୋହି ଥାଇ ବଉଦ ଭିତରେ । ୨ ।
ଖିଞ୍ଜିଳି ରାଜ୍ୟ ବୋଲୁଥାନ୍ତି ସମସ୍ତେ ବାରଗଡ଼ିଆଏ (୧) ଥାନ୍ତି
ବନମାଳୀ ଭଞ୍ଜ ନୃପଙ୍କୁ ନମାନି ବିବାଦକୁ କଲେ ଅତି । ୩ ।
ତାହା ଶୁଣି ନୃପ ହୋଇ ଅତି କୋପ ସୈନ୍ୟ ତୟାର କରଇ
ଭ୍ରାତ ରଘୁନାଥ ଭଞ୍ଜଙ୍କର ସାଥ କରିଦେଇ ପଠାଇ । ୪ ।
ମେଳିଆ ଲୋକଙ୍କୁ ସାଧି କରି ତୁମ୍ଭେ ସେହି ରାଜ୍ୟରେ ରାଜତ୍ୱ
କରି ନିଶ୍ଚିନ୍ତରେ ରହିବ ସେଠାରେ ଗଡ଼ କରି ଆହେ ଭ୍ରାତ । ୫ ।
ତାହା ଶୁଣି ରଘୁନାଥ ଭଞ୍ଜେ ଅତି ତୋଷ ହୋଇ ବାହାରିଲେ
ଖିଞ୍ଜିଳି ରାଜ୍ୟରେ ପରବେଶ ହୋଇ ଗରୁଡ଼ ଗ୍ରାମେ ରହିଲେ । ୬ ।

---

(୧) ସେତେବେଳେ ଖିଂଜଳି ରାଜ୍ୟରେ ବାରଗୋଟି ଗଡ଼ ଥିଲା । ସେଠାର ଅଧିବାସୀଙ୍କୁ ବାରଗଡ଼ିଆ କହନ୍ତି ।

ସେହିବନ ସଣ୍ଡକ ଗଡ଼ ପାଟଣା ଯେ ଗ୍ରାମ ଆଦି ହିଁ ନଥାନ୍ତି
ସାନ ସାନ ହୋଇ ପଲ୍ଲୀମାନଙ୍କରେ କନ୍ଧେ ଘର କରିଥାନ୍ତି । ୭ ।

ବଣମାନ ହାଣି ପଦରମାନଙ୍କ କାଙ୍ଗୁ ବାଇଲନ୍ଦି କରି
ଚୌରବୃତ୍ତି କରି ଉଦରକୁ ଭରି ଦିଅନ୍ତି କାଳକୁ ସାରି । ୮ ।

ଏସନ୍ତକ ଶାଳୀବାହନ ଶକାବ୍ଦ ସପ୍ତଶତ ଚଉବନ (୧)
ଭୋଗ ହୋଇଥିଲା ଶୁଣ ସୁଜନେ ରଘୁନାଥ ଭଞ୍ଜ ବିଧାନ । ୯ ।

ଗଡ଼ଆମାନେ ଯେ ଦେଖାହେଲେ ଆସି ତାଙ୍କୁ ସମ୍ଭାବନା କରି
ପାଖରେ ରଖିଲେ ଯେହୁ ନଆସିଲେ ତାହାଙ୍କୁ ମାଇଲେ ଧରି । ୧୦ ।

ସ୍ଥାନ ସ୍ଥାନକରେ ଗଡ଼ ବାନ୍ଧି ଗ୍ରାମ ପାଟଣାମାନ ବସାଇ
କ୍ରମ କ୍ରମରେ ଲସ୍କର ଘେନି ଆସି ନେଟଙ୍ଗା ପ୍ରବେଶ ହୋଇ । ୧୧ ।

ତହିଁ ଖଣ୍ଡେ ଦୂର ଆସି ନରବର ଗୁମା ଗୋଟିଏ ଦେଖିଲେ
ସର ଗୃହପାଖେ ବେଢ଼ିଚି ତାହାକୁ ଗୁମାସର ନାମ ଦେଲେ । ୧୨ ।

ପୁରୁଣା ହୋଇଥିବାରୁ ସେ ପୁରୁଣା ଗୁମାସର (୨) ଖ୍ୟାତ
ହୋଇ ସେହିଠାରେ ନହର ତୋଳାଇ ନୃପତି କଲେ ତାକତ । ୧୩ ।

ସେହିଠାରେ ରହି ଦୁଷ୍ଟ ଯେତେ ଥିଲେ ସେମାନଙ୍କୁ ସାଧି କଲେ
ତାଙ୍କୁ ମାରିଧରି ସୁଜନଙ୍କଠାରେ ପୁତ୍ରପରି ବୁଦ୍ଧି ଦେଲେ । ୧୪ ।

ସ୍ଥାନମାନଙ୍କରେ ଦେବାଳୟମାନ ନିର୍ମାଣ କଲେ ନୃପତି
ବିଷ୍ଣୁ ଶିବ ଆଦି ପ୍ରତିମାମାନଙ୍କୁ ବସାଇଲେ ବସୁମତି । ୧୫ ।

ତୋଟା ପୁଷ୍କରଣୀ ବାମ୍ଫି କୂପମାନ ବିଶେଷ ନିର୍ମାଣ କଲେ
ଏକବିଂଶ ସମ୍ବତ୍ସର ପର୍ଯ୍ୟନ୍ତରେ ଏଥି ନରବର ହେଲେ । ୧୬ ।

ପରମାୟୁ ତାଙ୍କ ଶେଷ ହୋନ୍ତେ ସ୍ୱର୍ଗଲୋକରେ କଲେ ସେ ବାସ
ତାହାଙ୍କର ପୁତ୍ର ଅରଜୁନ ଭଞ୍ଜ ସେ ଉତ୍ତାରୁ ନରଈଶ । ୧୭ ।

ମନ୍ଦରଧର କୃପାରୁ ସେ ପନ୍ଦର ବରଷ ରାଜତ୍ୱ କରି
ବିସ୍ତାରି ଯଶକୁ ପରମ ସ୍ଥାନକୁ ପାଇଲେ ସେ ଦଣ୍ଡଧାରୀ । ୧୮ ।

ତାହାଙ୍କ କୁମର କେଶବ ଭଞ୍ଜ ଯେ ସେ ଉତ୍ତାରୁ ହେଲେ ନୃପ
ସୁଜନଙ୍କଠାରେ ପୀରତିକ କରି କାରତି କଲେ ଅମାପ । ୧୯ ।

---

(୧) ୮୩୨ ଖ୍ରୀଷ୍ଟାବ୍ଦ । (୨) ସର୍ବପ୍ରଥମେ ୮୩୨ ଖ୍ରୀଷ୍ଟାବ୍ଦରେ ପୁରୁଣା ଗୁମୁସର ଗଡ଼ ସ୍ଥାପନ ହୋଇଥିଲା । ବର୍ତ୍ତମାନ ଉକ୍ତ ଗଡ଼ର ଧ୍ୱଂସାବଶେଷ "ବରପଲ୍ଲୀ" ଗ୍ରାମରେ ଦେଖାଯାଏ ।

ଆଗ୍ରମ ଦେବାଳୟମାନ ଶ୍ରୀରାମ କୃପାରୁ ନୃପତି କରି
ବିଂଶତି ବରଷ ରାଜତ୍ୱ କରି ଆୟୁଷକୁ ଦେଲେ ସାରି । ୨୦ ।
ହରିହରପୁରେ ନିବାସକୁ କଲେ ତାଙ୍କର ପୁତ୍ର ନଥିଲେ
ଭ୍ରାତ ବନମାଳୀ ଭଞ୍ଜେ ସେ ଉତ୍ତାରୁ ଗୁମାସରକୁ ପାଳିଲେ । ୨୧ ।
ଷଠଦଶ ବର୍ଷ ନରପତି ହୋଇ ସୁରପତିପୁରେ ଗଲେ
ତାହାଙ୍କ କୁମର ଗୋପାଳ ଭଞ୍ଜେ ସେ ଭୂପାଳ ତହିଁରେ ହେଲେ । ୨୨ ।
ତ୍ରୟୋବିଂଶ ବର୍ଷ ରାଜତ୍ୱକୁ କରି କାଳକୁ ବଳି ନ ପାରି
ମହୀପାଳ ବଳନ୍ଦାନଗୋମପୁରେ ଚଳିଗଲେ ଦଣ୍ଡଧାରି । ୨୩ ।
ତାଙ୍କ କୁମର ଗୋବିନ୍ଦ ଭଞ୍ଜ ନରବର ଏ ରାଜ୍ୟରେ ହୋଇ
ଚନ୍ଦର ବରଷ ପର୍ଯ୍ୟନ୍ତରେ ଧର୍ମେ ପାଳନା କଲେ ଏ ମହୀ । ୨୪ ।
ସେ ଉତ୍ତାରୁ ପରଲୋକ ହୋନ୍ତେ ତାଙ୍କ ସୁତ ଜଗନ୍ନାଥ ଭଞ୍ଜେ
ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତେ ଛତ୍ର ଟେକାଇଲେ ଗୁମୁସର ରାଜ୍ୟେ । ୨୫ ।
ତାଙ୍କର କୁମର ହରିକୃଷ୍ଣ ଭଞ୍ଜେ ସୁଖେ ହେଲେ ନରପତି
ପଞ୍ଚଦଶ ବର୍ଷ ପରଜାଙ୍କୁ ପାଳି ସୁରପୁରେ କଲେ ଗତି । ୨୬ ।
ସେ ଉତ୍ତାରୁ ତାଙ୍କ ଔରସ କୁମର ଗୌରହରି ଭଞ୍ଜ ରାଜା
ହୋଇ ଆନନ୍ଦରେ ନନ୍ଦନ ପର୍ଯ୍ୟେ ପାଳନା କଲେ ପରଜା । ୨୭ ।
ଦଶ ବର୍ଷ ଯାଏ ଈଶ ହୋଇ ଦେବଈଶ ପୁରକୁ ଚଳିଗଲେ
ତାଙ୍କ ସୁତ ନଥିବାରୁ ଭାଇ କୃଷ୍ଣ ଭଞ୍ଜେ ମହୀଭର୍ତ୍ତା ହେଲେ । ୨୮ ।
ଷୋଳ ବର୍ଷ ଯାଏ ରାଜତ୍ୱ କରଣେ କାଳରେ ହୋଇ ସେ ବଶ
ସୁରପୁରେ ଚଳି ଯାନ୍ତେ ନରସିଂହ ଭଞ୍ଜେ ହେଲେ ନରଈଶ । ୨୯ ।
ଅଷ୍ଟାଦଶ ବର୍ଷ ରାଜତ୍ୱକୁ କରି କଇଳାଶପୁରେ ଗଲେ
ତାଙ୍କ ସୁତ ବଳଭଦ୍ର ଭଞ୍ଜେ ଗୁମୁସରେ ରାଜତ୍ୱକୁ କଲେ । ୩୦ ।
ଏକବିଂଶ ବର୍ଷ ପ୍ରଜା ପାଳି ଚଳିଗଲେ ବଇକୁଣ୍ଠପୁରେ
ତାହାଙ୍କ କୁମର ମୁକୁନ୍ଦ ଭଞ୍ଜେ ସେ ରଜା ହେଲେ ଗୁମୁସରେ । ୩୧ ।
ଷଠଦଶ ବର୍ଷ ରଜା ହୋଇ ପ୍ରଜା ମନ୍ଦ ଅତି ରଞ୍ଜାଇଲେ
କାଳକୁ ଅତିକ୍ରମକୁ ନକରି ସେ ହରିହରପୁରେ ଗଲେ । ୩୨ ।
ମଧୁସୂଦନ ଭଞ୍ଜ ତାଙ୍କ କୁମର ପନ୍ଦରଟି ସମ୍ୱତ୍ସର
ରଜା ହୋଇ ଆୟୁଷ ପରେ ଚଳିଲେ ଶେଷଶାୟୀଙ୍କରପୁର । ୩୩ ।

ନାରାୟଣଙ୍କ କୃପାରୁ ତାଙ୍କ ସୁତ ନାରାୟଣ ଭଞ୍ଜ ନୃପ
ହୋଇ ଗୁମୁସରେ ଊନବିଂଶ ବର୍ଷ-ଏଣିକ ହୋଇଲେ ଲୋପ । ୩୪ ।

ଧରାଧର ଭଞ୍ଜ ତାହାଙ୍କ କୁମର ନୃପ ହୋଇ ସେ ଉତ୍ତାରୁ
ପନ୍ଦର ବରଷ ରାଜତ୍ୱ କରି ଭେଟିଗଲେ ଗୋଲକପୁରୁ । ୩୫ ।

ସେ ଉତ୍ତାରୁ ତାଙ୍କ ସୁତ ନରହରି ଭଞ୍ଜ ନରପତି ହୋଇ
ସୁରପତିପୁରେ ଗଲେ ଅଷ୍ଟାଦଶ ସମ୍ବତ୍ସର ପାଳି ମହୀ । ୩୬ ।
ତାହାଙ୍କ କୁମର ଜଗନ୍ନାଥ ଭଞ୍ଜ ଜଗନ୍ନାଥଙ୍କ କୃପାରୁ
ଊନବିଂଶ ବର୍ଷ ପର୍ଯ୍ୟନ୍ତରେ ହେଲେ ଗୁମୁସରେ ଜନ-ଗୁରୁ । ୩୭ ।

ମତ୍ତହସ୍ତୀ ଭଞ୍ଜ ତାହାଙ୍କ କୁମର ଊନବିଂଶ ସମ୍ବତ୍ସର
ଗୁମୁସର ସ୍ଥିତ ପରଜାଙ୍କୁ ପାଳି ଚାଲିଗଲେ ସୁରପୁର । ୩୮ ।

ପୁରୁଷୋତ୍ତମ ଭଞ୍ଜ ଅତି ଉତ୍ତମ ତାହାଙ୍କ କୁମର ହୋଇ
ଦଶ ସମ୍ବତ୍ସର ପରଜାଙ୍କୁ ପାଳି ଦେଖିଲେ ସେ ସୁରସାଇଁ । ୩୯ ।

ଲକ୍ଷ୍ମୀନାରାୟଣ ଚରଣକୁ ଧ୍ୟାୟି ସୂର୍ଯ୍ୟମଣି ଦ୍ୟୁତି କହି
ଭଞ୍ଜ ରାଜାଙ୍କର ବଂଶାନୁଚରିତ ଦ୍ୱିତୀୟ ସ୍କନ୍ଧଟି ଏହି । ୪୦ ।

---

## ତୃତୀୟ ସ୍କନ୍ଧ

[ ରାଗ—ମାଳବ ]

ଏଥୁ ଅନନ୍ତରେ ଶୁଣ ସୁବୁଦ୍ଧି ନିଚୟ
ପୁରୁଷୋତ୍ତମ ଭଞ୍ଜ ରାଜାଙ୍କ ତନୟ ଯେ । ୧ ।

ବଜ୍ରଧର ଭଞ୍ଜ ନାମ ତାହାଙ୍କର ଖ୍ୟାତ
ବଜ୍ରଧର ପରି ସେହୁ ମହୀରେ ବିଖ୍ୟାତ ଯେ । ୨ ।

ଦଶ ବର୍ଷ ରାଜା ହୋଇ କାଳକୁ ନ ବଳି
ବଳିପରପୁରେ ଗଲେ ପାଳି ମହୀଆଳି ଯେ । ୩ ।

ସୁତ କେହି ନ ଥିବାରୁ ତାହାଙ୍କର ଭ୍ରାତ
ହରିଶରଣ ଭଞ୍ଜେ କଲେ ସୁଖରେ ରାଜତ୍ୱ ଯେ । ୪ ।

ତ୍ରୟୋଦଶ ବର୍ଷ ନୃପ ହୋଇ ଚଳାଇଲେ
କପିଳନାମା ଭଞ୍ଜଙ୍କର ତାଙ୍କ ସୁତ ଥିଲେ ଯେ । ୫ ।

ସପ୍ତବିଂଶ ବର୍ଷ ଯାଏ ପାଳି ପରଜାଙ୍କୁ
ଚଳନ୍ତେ ଶ୍ରୀଧର ଭଞ୍ଜ କଲେ ରାଜତ୍ୱକୁ ଯେ । ୬ ।

ପଞ୍ଚଦଶ ବର୍ଷ ନୃପ ହୋଇ ପ୍ରାଣ ହାରି
ସୁଖରେ ଗମନ କଲେ ଶ୍ରୀଧରପୁର ଯେ । ୭ ।

ରାମଚନ୍ଦ୍ର ଭଞ୍ଜ ହେଲେ ଯେ ଉତ୍ତାରୁ ରାଜା
ରାମଚନ୍ଦ୍ର ପରାଏ ପାଳନ କଲେ ପ୍ରଜା ଯେ । ୮ ।

ଏକବିଂଶ ସମ୍ବତ୍ସର କରି ରାଜତ୍ୱକୁ
ଗଲେ ସୁତ ନୃପ କରି ଲକ୍ଷ୍ମଣ ଭଞ୍ଜଙ୍କୁ ଯେ । ୯ ।

ପନ୍ଦର ବରଷ ପ୍ରଜା ମନ ରଞ୍ଜାଇଲେ
ସେ ଉତ୍ତାରୁ ବିଲୋଚନ ଭଞ୍ଜ ରାଜା ହେଲେ ଯେ । ୧୦ ।

ଅଠର ବରଷ ପର୍ଯ୍ୟନ୍ତେ ପାଳି ପରଜାଙ୍କୁ
ଚଳିଲେ ସେ ଅତିକ୍ରମ ନକରି କାଳକୁ ଯେ । ୧ ।

ହରିସେବକ ଭଞ୍ଜ ଯେ ତାହାଙ୍କ କୁମର
ପରଜା ପାଳିଲେ ସପ୍ତଦଶ ସମ୍ବତ୍ସର ଯେ । ୧୨ ।

ସୁତ ନଥିବାରୁ ଭ୍ରାତ ଗଦାଧର ଭଞ୍ଜ
ପଞ୍ଚବିଂଶ ବର୍ଷ ରାଜା ହେଲେ ଏହି ରାଜ୍ୟ ଯେ । ୧୩ ।

ଦୟାନିଧି ଭଞ୍ଜ ତାଙ୍କ ଔରସ କୁମର
ନୃପତି ହୋଇଲେ ଏକବିଂଶ ସମ୍ବତ୍ସର ଯେ । ୧୪ ।

ଗିରିଧର ଭଞ୍ଜ ତାଙ୍କ ନନ୍ଦନ ଅନନ୍ତ
ଊନବିଂଶ ସମ୍ବତ୍ସର ହୋଇଲେ ନୃପତି ଯେ । ୧୫ ।

ତାହାଙ୍କର ପ୍ରିୟ ପୁତ୍ର କୃପାସିନ୍ଧୁ ଭଞ୍ଜ
ବାର ବର୍ଷ ନୃପ ହେଲେ ଗୁମୁସର ରାଜ୍ୟ ଯେ । ୧୬ ।

ପଦ୍ମନାଥ ଭଂଜ ତାଙ୍କ ଅନନ୍ତ ନନ୍ଦନ
ଷଡ଼ବିଂଶ ବର୍ଷ ହେଲେ ଗୁମୁସରେ ଇନ ଯେ । ୧୭ ।

ମାଧବ ଭଂଜ ଯେ ରମାଧବଙ୍କ କୃପାରୁ
ପଞ୍ଚଦଶ ବର୍ଷ ନୃପ ହେଲେ ସେ ଉତ୍ତାରୁ ଯେ । ୧୮ ।

ତାହାଙ୍କର କୁମର କୋମଳଲୋଚନ ଭଞ୍ଜ
ଛଅକୁ ଧରାଇଲେ ଯେ ଗୁମୁସର ରାଜ୍ୟ ଯେ । ୧୯ ।
ବଂଶ ସମ୍ଭୂତର ପ୍ରଜାମାନଙ୍କୁ ପାଳିଲେ
ତାଙ୍କ ସୁତ ହରିହର ଭଞ୍ଜ ନୃପ ହେଲେ ଯେ । ୨୦ ।
ଚତୁର୍ଦ୍ଦଶ ବରଷ ସେ ରାଜଭୋଗ କରି
ନନ୍ଦନପୁରେ ଚଳିଗଲେ ଦଣ୍ଡଧାରୀ ଯେ । ୨୧ ।
ପୀତାମ୍ବର ଭଞ୍ଜ ତାଙ୍କ କୁମର ଅଟନ୍ତି
ତ୍ରୟୋଦଶ ସମ୍ବତ୍ସର ହୋଇଲେ ନୃପତି ଯେ । ୨୨ ।
ନଳୀନାକ୍ଷ ଭଂଜେ ହେଲେ ସେ ଉତ୍ତାରୁ ରାଜା
ଦ୍ୱାଦଶ ବରଷ ଯାଏ ପାଳିଲେ ପରଜା ଯେ । ୨୩ ।
ତ୍ରିବିକ୍ରମ ଭଂଜେ ହେଲେ ତାହାଙ୍କ କୁମର
ଦଶ ବର୍ଷ ରାଜା ହୋଇ ଗଲେ ସୁରପୁର ଯେ । ୨୪ ।
ଗଜେନ୍ଦ୍ର ଭଂଜେ ଯେ ସେ ଉତ୍ତାରୁ ନୃପ ହେଲେ
ଷଟଦଶ ବର୍ଷ ପ୍ରଜା ପାଳି ଚଳିଗଲେ ଯେ । ୨୫ ।
ତାଙ୍କର ପୁତ୍ର ଗୋପାଳ ଭଂଜ ନରପତି
ପଞ୍ଚଦଶ ବର୍ଷ ଯାଏ ପାଳିଲେ ସେ କ୍ଷିତି ଯେ । ୨୬ ।
ପାତେଳ ଗୋପୀନାଥ ଭଂଜେ ତାଙ୍କ କୁମର
ମର୍ତ୍ତ୍ୟପୁରେ ଅଟନ୍ତି ସେ ମହାବଳୀଆର ଯେ । ୨୭ ।
ପୃଥୁଳ ଶରୀର ତାଙ୍କ ଅଟନ୍ତି ସେ ଉଚ
(୧) ନଶରେ ସମସ୍ତ ନରେ ହୋଇବେ ଯେ ନୀଚ ଯେ । ୨୮ ।
ଓଡ଼ିଶାରେ ଚକ୍ରବର୍ତ୍ତୀ ନରସିଂହ ଦେବ
ପୃଥିବୀ ପାଳୁଥିଲେ ଯେହ୍ନେ ଦେବଦେବ ଯେ । ୨୯ ।
ଭଂଜ ରାଜାଙ୍କର ଭଗ୍ନୀ କି ତାଙ୍କୁ ଥିଲେ ଦେଇ
ସେ କରିଥିଲେ ତାଙ୍କୁ ପାଟ ମହାଦେଈ ଯେ । ୩୦ ।
ସେହି ସକାଶରୁ ତାଙ୍କ ଶଳା ସେ ଅଟନ୍ତି
ଓଡ଼ିଶାକୁ ଗଲେ ଥରେ ଭଂଜ ନରପତି ଯେ । ୩୧ ।

---

(୧) ନଶରେ—ନଳଲେ, ମାପକଲେ ।

ନରସିଂହ ଦେବଙ୍କର ମୃଗେନ୍ଦ୍ର ଦୁଆରେ
ଯାଆନ୍ତେ ଦେହ ଲଗିଲ ଆବରଂମଥାରେ ଯେ ।୩୨।
ଏ ସକାଶୁ ମଥା ଘୋଡ଼ି କଣ୍ଡୁଆଇ ଗଲେ
ନରସିଂହ ଦେବରାଜା ଏହା ଦେଖୁଥିଲେ ଯେ ।୩୩।
ହାସ୍ୟକରି ବୋଇଲେ ଭଂଜେ କେଡ଼େ ତ ପାଚେଳି
ଏ ଘେନ ଯେ ପ୍ରଥମେ ସେ ନାମ ହେଲ ଝଲ ଯେ ।୩୪।
ଦିନେ ସେ ଜଗନ୍ନାଥଙ୍କ ଗୁଣ୍ଡିଚା ଯାତ୍ରାରେ
ନରସିଂହ ଦେବ ଥିଲେ ସ୍ୟନ୍ଦନ ଉପରେ ଯେ ।୩୫।
ଭଂଜରାଜା ପାଲଙ୍କିରେ ବସି ଯାଉଥିଲେ
କାହାଳି ବଜାଇ ଛତ୍ର ଟେକାଇ ସେ ଥିଲେ ଯେ ।୩୬।
ତାହା ଦେଖି ଜନେ ରାଜା ଛାମୁରେ ଜଣାଇଁ
କେଡ଼େ ଗର୍ବ କରି ଭଂଜେ ଆସନ୍ତି ଗେଲାଇ ଯେ ।୩୭।
ଛତ୍ର ଭାଙ୍ଗି ଦିଅ ବୋଲି ନୃପ ଆଜ୍ଞା ଦେଲେ
ତାହା ଶୁଣି ଜନେ ଦଣ୍ଡ ଧରଣ ଧାଇଁଲେ ଯେ ।୩୮।
ନୃପ ଦେଖି ପାଲଙ୍କିରୁ ଓହ୍ଲାଇ ସେକ୍ଷଣି
ପାଦେ ଗମିଗଲେ ଯହିଁ ଥିଲେ ନୃପମଣି ଯେ ।୩୯।
ତାଙ୍କୁ ଦେଖି ନୃପବର କହିଲେ ଏ ଗିର
କେଡ଼େ ଗର୍ବ କଲୁ ହୃଦେ ଭଂଜ ନରବର ହେ ।୪୦।
ତାହା ଶୁଣି ଭଂଜ ନୃପ କହିଲେ ଏ ବାଣୀ
ତୁମ୍ଭେ କି ହେ ବୋଲାଇବ ନୃପ ଶିରୋମଣି ଯେ ।୪୧।
ଆମ୍ଭେମାନେ ଶିରରେ ଛତ୍ର ଟେକାଇଲେ
ଲକ୍ଷେ ରାଜା ଶିରୋମଣି ତୁମ୍ଭେ କହି ଭଲେ ଯେ ।୪୨।
ତା ଶୁଣି ଆଜ୍ଞାକୁ ଦେଲେ ନରସିଂହ ଦେବ
କାହାଳି ବଜାଇ ତୁମ୍ଭେ ଛତ୍ର ଟେକାଇବ ଯେ ।୪୩।
ଆମ୍ଭ ଛାମୁରେ ହେଲେ କେବେ ନୋହିବ ମନା
ଏ ରୂପେ ଆଜ୍ଞା ଦେଲେ ନୃପ ମହାମନା ଯେ ।୪୪।
ସେହିଦିନଠାରୁ ସେହି ରୂପରେ ହୋଇଲା
ଭଞ୍ଜ ରାଜା ବସିବାକୁ ଚୌକି ଦିଆ ହେଲା ଯେ ।୪୫।

ଆନ ଜମିଦାରମାନେ ଖଟିଲେ ଯେ ସ୍ଥାନରେ
ବସନ୍ତ ଦିଆନ ବକ୍ସିଙ୍କ ଆସନରେ ନନ୍ଦ ।୪୬।

ଏହି ରୂପେ କ୍ଷତ୍ରବରେ ଯେ ଭଞ୍ଜ ରାଜନ
ସିଦ୍ଧ କରି ରାଜ୍ୟକୁ ବାହୁଡ଼ିଲେ ବନ୍ଦନ ଯେ ।୪୭।

ପୁଷ୍କରଣୀ ତୋଠା ବାନ୍ଧି କୂପମାନ କଲେ
ଦେବାଳୟ କରି ବସ୍ତୁ ଶିବଙ୍କୁ ସ୍ଥାପିଲେ ହେ ।୪୮।

ଦ୍ୱାବିଂଶ ବରଷ ଯାଏ ପ୍ରଜାଜନ ପାଳି
ସୁରପୁରେ ଚଳିଗଲେ କାଳକୁ ନ ବଳି ଯେ ।୪୯।

ତାଙ୍କ ପୁତ୍ର ଲଣ ଭଞ୍ଜ ହୋଇ ନରପତି
ଦ୍ୱାବିଂଶ ବରଷ ଯାଏ ପାଳିଲେ ଏ କ୍ଷିତି ଯେ ।୫୦।

ତାହାଙ୍କ କୁମର ଜଗନ୍ନାଥ ଭଞ୍ଜ ରାଜା
ସପ୍ତବିଂଶ ବର୍ଷ ଯାଏ ପାଳିଲେ ପରଜା ଯେ ।୫୧।

ଆୟୁ ଅନ୍ତରେ ପୁରୁଷୋତ୍ତମ ଭଞ୍ଜ ରାଜା
ତାଙ୍କ ପୁତ୍ର ସେ ପାଳିଲେ ଗୁମୁଧର ପ୍ରଜା ଯେ ।୫୨।

ଅଷ୍ଟାଦଶ ବରଷ ପାଳନା କରି ମହୀ
ସୁରରାଜପୁରକୁ ଗମନ କଲେ ହେନ୍ତ ଯେ ।୫୩।

ତାଙ୍କ ପୁତ୍ର ପ୍ରତାପ ଭଞ୍ଜ ନାମରେ ଖ୍ୟାତି
ପ୍ରତାପରେ ପ୍ରଭାକରଠାରୁ ଜ୍ୟୋତି ଅତି ଯେ ।୫୪।

ସେଦିନ ସରିକ କୁଲଡ଼ ନାମ ନଥିଲା
କୁଲଡ଼ିହ ନାମେ ତହିଁ କନ୍ଧ ଜଣେ ଥିଲା ଯେ ।୫୫।

ପ୍ରତାପ ଭଞ୍ଜଙ୍କୁ ସେହୁ ନ ମାନିଲା ଯହୁଁ
ତା' ପରେ ଅତ୍ୟନ୍ତ କ୍ରୋଧ ହେଲେ ନୃପ ତହୁଁ ଯେ ।୫୬।

ଲସ୍କର ଧରି ସେଠାରେ ପ୍ରବେଶ ହୋଇଲେ
କୁଲଡ଼ କନ୍ଧକୁ ଧରି ହାଣି ପକାଇଲେ ଯେ ।୫୭।

କୁଲଡ଼ ଗଡ଼ ବୋଲିଣ ତାକୁ ନାମ ଦେଇ
ସେହିଠାରେ ତାକତଙ୍କୁ କଲେ ନରସାଇଁ ଯେ ।୫୮।

ତ୍ରୟୋଦଶ ବରଷ ସେ ନରପତି ହେଲେ
ମୃତ୍ୟୁ ଲଭନ୍ତେ ତାଙ୍କର ସୁତ ନୃପ ହେଲେ ଯେ ।୫୯।

ତାହାଙ୍କର ନାମ ବନମାଳୀ ଭଞ୍ଜ ନୃପ
ଭ୍ରାତ ଗୋପୀନାଥ ଭଞ୍ଜେ ଆଚରିଲେ ପାପ ଯେ ।୭୦।

ସପ୍ତବରଷ ଯେ ସେହୁ ରାଜ୍ୟ ପାଳିଥିଲେ
ଗୋପୀନାଥ ଭଞ୍ଜେ ତାଙ୍କ ପ୍ରାଣ ବାଧ କଲେ ଯେ ।୭୧।

ତା ଉତ୍ତାରୁ ଗୋପୀନାଥ ଭଞ୍ଜେ ହେଲେ ରାଜା
ଦ୍ୱାବିଂଶ ବରଷ ଯାଏ ପାଳିଲେ ପରଜା ଯେ ।୭୨।

ଗୋପୀନାଥପୁର ନାମେ ଶାସନକୁ କଲେ
ତାହାଙ୍କର ଭାର୍ଯ୍ୟା ମାଳାଦେଈ ନାମେ ଥିଲେ ଯେ ।୭୩।

ମାଳାଦେଈପୁର ନାମେ ଶାସନକୁ କଲେ
ପରମାୟୁ ଶେଷରେ ପରାଣ ହରାଇଲେ ଯେ ।୭୪।

ତୃତୀୟ ଛାନ୍ଦ ଏଠାରେ ହେଲା ସମାପତ
ସୂର୍ଯ୍ୟମଣି ତ୍ୟାଜ ନିତ ଚିନ୍ତେ ରମାପତ ଯେ ।୭୫।

---

## ଚତୁର୍ଥ ଛାନ୍ଦ

[ ରାଗ—ଆଷାଢ଼ ଶୁକ୍ଳ ]

ଏଥୁ ଅନ୍ତେ ଶୁଣ ସୁବୁଦ୍ଧି ନିଚୟ ଗୋପୀନାଥ ଭଂଜଙ୍କର ତନୟ
ଧନଂଜୟ ଭଂଜ ନାମ ବିଖ୍ୟାତ ତେଜରେ ସେ ଧନଂଜୟ ସାକ୍ଷାତ
ସେ ନୃପତି ହେଲେ ଯେ
ପୂର୍ବ ପରି ପରଜାଚୟ ପାଳିଲେ ।୧।

ଗୋବିନ୍ଦ ଭଂଜେ ନାମେ ଭ୍ରାତ ସାନ ଥାଠ ରାଜା ତାଙ୍କୁ କଲେ ରାଜନ
ରାଉତ ଘରରୁ ଯେ କନ୍ୟା ଦୁଇ ବିବାହ ହେଲେ ଭଂଜ ନରସାଇଁ
ଜମିଦାର ଘରୁ ଯେ
ବିବାହ ହୋଇଲେ ସପତଭୁରୁ ।୨।

କୋଠ ଲୋକମାନ ବିଶେଷ କଲେ ସାତକୋଡ଼ି ନାଚୁଣିଙ୍କି ରଖିଲେ
କାବ୍ୟ ଶାସ୍ତ୍ରମାନଙ୍କରେ ଗୁରୁ ପରି ସଙ୍ଗୀତ ବିଦ୍ୟାରେ ଗନ୍ଧର୍ବ ସରି

ଶିଳ୍ପ ବିଦ୍ୟାରେ ଯେ
ବିଶ୍ୱକର୍ମା ଅଟନ୍ତି ସାକ୍ଷାତରେ । ୩ ।
କାମଶାସ୍ତ୍ରରେ କାମଦେବ ପରି    ସୁନ୍ଦର ଯଉଣି ଯେହ୍ନେ ନୋହେ ସରି
ସ୍ତ୍ରୀମାନଙ୍କୁ ଘେନି ନିଜ ଗଡରେ    କ୍ରୀଡ଼ାକୁ ଜଲେ ବର୍ଷି ନିରନ୍ତରେ
କୁଚ ମର୍ଦ୍ଦନ ଯେ
ନିତି କରନ୍ତି ଅଙ୍କରେ ରଞ୍ଜନ । ୪ ।
ସତୁରି ସହସ୍ର ଟଙ୍କା ଲଗାଇ    ଜଗତି ନିର୍ମାଣ କଲେ ନରସାଇଁ
ତହିଁରେ ନିତି ଆହାର ବିହାର    କଲେ ନରଚନ୍ଦ୍ର ଭଂଜ ନରବର
ଏ ରୂପେ କାଳ ଯେ
ନେଲେ ନରଚନ୍ଦ୍ର ଭଂଜ ନରପାଳ । ୫ ।
ପାଣିଗ୍ରହଣ ମହାଦେଈଙ୍କର    ଜାତ ହୋଇଲେ ଦ୍ୱାଦଶ କୁମର
ରାଜତ୍ୱ ଧରି ନାହିଁ ଜ୍ୟେଷ୍ଠ ସୁତ    ଗଙ୍ଗାଧର ପାଟ କୁମର ଖ୍ୟାତ
ଆଉ ମାନଙ୍କର
ନାମକୁ କେତେ କହିବା ନେ ନର । ୬ ।
ଆଉ କୁମର ନାମ ବଳଭଦ୍ର    ଜଗନ୍ନାଥ ପଦ ଅର୍ଚ୍ଚନେ ଭଦ୍ର
ଜଗନ୍ନାଥପ୍ରସାଦ ମୁଠା ତାଙ୍କୁ    ଦେବାରେ ସେଠାରେ କରି ଗୃହକୁ
ପୁରୁଣାଗୁଡ଼ାରେ ଯେ
ରହିଲେ ଶକ୍ତି କରି ଉରଷରେ । ୭ ।
ଜଗନ୍ନାଥପ୍ରସାଦରେ ଆପଣ    ଦିବ୍ୟମଣ୍ଡପ କରି ନିରମାଣ
ଶ୍ରୀ ଦଧିବାମନକୁ ବସାଇଲେ    ପୁଷ୍କରିଣୀଟିଏ ନିବାନ୍ଧ କଲେ
ମଙ୍ଗରାଜପୁର ଯେ
ନାମେ ଶାସନ କଲେ ଧୀରବର । ୮ ।
ପୁରୁଣାଗୁଡ଼ାରେ ଲକ୍ଷେ ଭରଣ    ଧାନ ସମ୍ପାଦ ରଖିଲେ ଆପଣ
କୂପ ବାନ୍ଧି ତୋଟାମାନଙ୍କୁ କଲେ    ମହୀରେ ଯଶମାନ ସମ୍ପାଦିଲେ
ଆରକ କୁମର ଯେ
ହରିଶରଣ ଭଞ୍ଜ ଖ୍ୟାତ ନର । ୯ ।
ହନ୍ତକାଳି ବଡ଼ଜେନା ତାଙ୍କର    ପଦଖ୍ୟାତ ହେଲା ମହୀଲୋକର
ତାହାଙ୍କ ପେଣ୍ଡା ବେନି ଜଣ ଧରି    ନିଅନ୍ତି କାନ୍ଧେ ସଙ୍ଗେ ଭାର କରି
ଅତି ବଳବନ୍ତ ଯେ
ଅଟନ୍ତି ସେହ୍ନ ନରପତି ସୁତ । ୧୦ ।

କରପେଣ୍ଡାରେ ବରାଟକ ମାନ ଦ୍ୱାଦଶ କୋଡ଼ି ହୁଅଇ ଗଣନ
ଜଗତ ଗୁରୁ ସଙ୍ଗେ ମୋତ୍ର ଯାଇ (୧) । ଜୟବାରୁ ଯାଇଥିଲେ ସେ ହାରି
ତାଙ୍କ ବଳ ଦେଖି
ବୁଗୁଡ଼ା ମୁଠା ତାଙ୍କୁ ଦେଲେ ଲେଖି । ୧୧ ।

ନିଜ ବୁଗୁଡ଼ାରେ (୨) ନିବାସ କଲେ ଜଗନ୍ନାଥ ଦେବଙ୍କୁ ବସାଇଲେ
ହରିଶରଣପୁର ଦେଇ ନାମ ଶାସନ କଲେ ସେ ନର ଉତ୍ତମ
ଏହି ରୂପେ କେତେ ଯେ
ଧମ୍ମାଗାରମାନ ଶୋଭ ହୁଅନ୍ତେ । ୧୨ ।

ଧନଞ୍ଜୟପୁର ଶାସନ କଲେ ବିଷ୍ଣୁ ଈଶାନ ପ୍ରତିମା ସ୍ଥାପିଲେ
ତୋଟା ଦେବାଳୟ ପୁଷ୍କରିଣୀ— ମାନଙ୍କୁ ନିର୍ମା କଲେ ନରମଣି
ବହୁ ଧନମାନ ଯେ
ବିପ୍ରବରମାନଙ୍କୁ କଲେ ଦାନ । ୧୩ ।

ନବଦୁର୍ଗରେ (୩) ବିଭା ହୋଇଥିଲେ ମଣ୍ଡାଦେଈ ତାଙ୍କ ନାମଟି ଭଲେ
ତାଙ୍କଠାରେ ନୃପଙ୍କର ବହୁତ ହୃଦରେ ସ୍ନେହ ହୋଇଥାଏ ଜାତ
ତାହାଙ୍କର ସୁତ ଯେ
ନୀଳକଣ୍ଠ ଭଞ୍ଜ ନାମଟି ଖ୍ୟାତ । ୧୪ ।

ନୃପଙ୍କୁ ନିତ ନିତ ତ ମଣ୍ଡାଦେଈ ଏକାନ୍ତେ କୋମଳ ଗିରକୁ କହି
ମୋର କୁମର ନୀଳକଣ୍ଠ ଭଞ୍ଜ ନରବର କରିବ ଏହି ରାଜ୍ୟ
ନୃପବର ଶୁଣି
ଭଙ୍ଗି ନପାରନ୍ତି ତାହାଙ୍କ ବାଣୀ । ୧୫ ।

ଏହି ରୂପରେ କେତେ କାଳ ଗଲେ ଅଶ୍ୱଥାମା କୁଲଡ଼କୁ ଆସିଲେ
ମହାପୁରୁଷ ଲକ୍ଷଣ ତାଙ୍କର ଦେଖିବାରୁ ନେନେ ନୃପତିବର
ଅଶ୍ୱଥାମା ବୋଲି
ଜାଣିଲେ ନିଜ ମାନସରେ ଭଲି । ୧୬ ।

ନାରାୟଣ ପାଠଶାଳରେ ତାହାଙ୍କୁ ବସାଇ ଦେଇଣ କଲେ ଚରଣକୁ
ନିତି ତାହାଙ୍କ (୪) ପାରୁଷକୁ ଯାଇ ଦେଖା ହୋଇଣ ଆସନ୍ତି ନରସାଇଁ

---

(୧) ମଲ୍ଲକୀଡ଼ା (୨) ବୁଗୁଡ଼ା ଦୁର୍ଗ ଘୁମୁସରର ଏକ ପ୍ରାଚୀନ ଗଡ଼ । ଏହି ଗଡ଼ରେ ଚତୁର୍ଭୁଜନାରାୟଣ ମନ୍ଦିର ଭଞ୍ଜବଂଶର ଅବତଂସ ଶ୍ରୀକର ଭଞ୍ଜଙ୍କ ସମୟରେ ନିର୍ମିତ । (୩) ନୟାଗଡ଼ । (୪) ପାଖକୁ ।

ଏକ ବଚନେ ତାଙ୍କୁ ସେ
ପଚ୍ଛରିଲେ କରି ନମସ୍କାରକୁ । ୧୭ ।

ଆମ୍ଭ ଉତ୍ତାରୁ ଆହେ ସିଦ୍ଧବର | ଏ ରାଜ୍ୟରେ କେ ହେବ ନରବର
ମୋ ଆଗରେ ସତ୍ୟ କରିଣ କହ | ଏଥିରେ ହୋଉଅଛୁ ମୋ ସନ୍ଦେହ
ସେ ସିଦ୍ଧ କହିଲେ ଯେ
ସବୁ ସୁତଙ୍କୁ ଘେନି ପ୍ରାତଃକାଳେ । ୧୮ ।

କାଲି ଆସିବ ମୋର ସମୀପକୁ | ମୁଁ ନୟନରେ ଦେଖି ସମସ୍ତଙ୍କୁ
ଯଥାର୍ଥ କରି କହିବି ମୁଁ ତାହା | ସତ୍ୟ କରି ହୃଦେ ରଖିବ ତାହା
ଏହା ନୃପ ଶୁଣି ସେ
ନହରକୁ ବିଜେ କଲେ ସେକ୍ଷଣି । ୧୯ ।

ପ୍ରାତଃକାଳରୁ ସମସ୍ତ କୁମର— | ମାନଙ୍କୁ ଉଠାଇଲେ ନୃପବର
ଗୋବନ୍ଦ ଭଞ୍ଜ ଆଠ ରାଜାଙ୍କର | ନଅଗୋଟି ହୋଇଥିଲେ କୁମର
ଭାଇ ପୁତ୍ରୁରାଙ୍କୁ ସେ
ଘେନି ନୃପତି ଗମିଲେ ସେଠାକୁ । ୨୦ ।

ଭାଇ ପୁତ୍ରୁରାଙ୍କୁ ଧରି ସଙ୍ଗରେ | ଘେନି ନୃପତି ସିଦ୍ଧଙ୍କ ପୁରରେ
ଦେଖା ହୋଇଣ ପାଖରେ ବସିଲେ | ଅତ୍ୟନ୍ତ କୋମଳ ଗିରା ଭାଷିଲେ
ଏମାନଙ୍କୁ ଗୃହୀଁ ସେ
ଯଥାର୍ଥ କରି ମୁନି ଦିଅ କହି । ୨୧ ।

ତାହା ଶୁଣିଣ ସିଦ୍ଧ ସେହିକ୍ଷଣ | ସମସ୍ତଙ୍କୁ ଲକ୍ଷଣରେ ଶାକ୍ଷଣ
କରି କହିଲେ କୋମଳରେ ବାଣୀ | ଧନଆର ଉତ୍ତାରୁ ନୃପମଣି
ଧନଆ ହୋଇବ ସେ
ଏ କଥା ହୃଦୟରେ ଘେନିଥିବ । ୨୨ ।

ତାହା ଶୁଣି ନୃପ ଭାଳିଲେ ମନ | ମୋର ଅଛନ୍ତି ଦ୍ୱାଦଶ ନନ୍ଦନ
ଗଙ୍ଗାଧର ପାଟ କୁମର ମୋର | ଏଥିରେ ନୋହିବ ନୃପତିବର
ଆନ ସୁତମାନେ ସେ
କେହି ନୋହିବେ ନୃପ ଏହି ସ୍ଥାନେ । ୨୩ ।

ଆଠ ରାଜାଙ୍କ ଛଅଟି କୁମର | ତହିଁରେ ସାନ ଧନଭଞ୍ଜ ବୀର
ସେ ଏଥି କେହି ହୋଇବ ନୃପତି | ଏକଥା ପାଉନାହିଁ ଆମ୍ଭ ମତି

ବିଧାତା ଲେଖନ ଯେ
ଥିଲେ ଅବା ଯେ କେ କରିବ ଆନ । ୨୪ ।

ଆମ୍ଭଙ୍କୁ ହେଲା (୧) ନବତି ବୟସ     ଗଙ୍ଗାଧରକୁ ଏଥେ ଯୁବ ଈଶ
କରିଅଛଇ ତାହା କେବେ ଆନ     ନ କରିବା ତ ଏ ଆମ୍ଭର ମନ
ନିତି ମଣ୍ଡାଦେଈ ଯେ
କହୁଣ ଅଛନ୍ତି ମାଳକଣ୍ଠ ପାଇଁ । ୨୫ ।

ଏହା ବିଗ୍ରହ ନୃପ ନନ୍ଦରକୁ     ଆସିଲେ ସଙ୍ଗେ ଘେନି ସମସ୍ତଙ୍କୁ
ମଣ୍ଡାଦେଈ ଏହା କର୍ଣ୍ଣରେ ଶୁଣି     ନୃପବରଙ୍କୁ କହିଲେ ଏ ବାଣୀ
ମୋହର କୁମର ଯେ
ମାଳକଣ୍ଠକୁ ଯୁବରାଜ କର । ୨୬ ।

ତାହା ଶୁଣି ଭଞ୍ଜ ନୃପତି ମଣି     କିଛି ନ କହି ରହିଲେ ସେ ଶୁଣି
ମଣ୍ଡାଦେଈ ଘେନି ମନରେ ମାନ     କିଛି ନୃପଙ୍କୁ ନ କହି ବଚନ
କେତେ ଦିନ ଯାନ୍ତେ ଯେ
ଆଠ ରଜାଙ୍କର ସମସ୍ତ ସୁତେ । ୨୭ ।

ଗଙ୍ଗାଧର ପାଠ କୁମର ପାଶେ     ନିତି ବସିଥାନ୍ତି ମନ ହରଷେ
ନାନା କ୍ରୀଡ଼ାମାନଙ୍କୁ କରିଥାନ୍ତି     ମଣ୍ଡାଦେଈ ସବୁ ଜାଣିଣ ମତି
କୁତ୍ସିମ ବିଗ୍ରହ ଯେ
କରି ନୃପଙ୍କୁ କହିଲେ ଏ ଗିର । ୨୮ ।

ଆଠ ରଜାଙ୍କର କୁମରମାନେ     ପାଠ କୁମରଙ୍କର ସନ୍ନିଧାନେ
ନିତି ବସି କୂଟ ବିଗ୍ରହୁଛନ୍ତି     ପରଲୋକ ହୋଇଗଲେ ନୃପତି
ମଣ୍ଡାଦେଈ ତାର ଯେ
କୁମରକୁ କରିବେ ନରବର । ୨୯ ।

ଆମ୍ଭେମାନେ ଥାଇ ମାଳକଣ୍ଠକୁ     ମାରି ଘେନିଯିବା ତାଙ୍କ ପ୍ରାଣକୁ
ଗଙ୍ଗାଧର ପାଠ କୁମର ନିତି     ତାଙ୍କ କଥାକୁ ସମ୍ମତ କରନ୍ତି
ଏହି ସକାଶରୁ
ତାଙ୍କୁ ଘଉଡ଼ି ଦେବା କୁଳଡ଼ରୁ । ୩୦ ।

ତାହା ଶୁଣି ନୃପ ସମ୍ମତି କଲେ     ଆଠ ରଜାଙ୍କୁ ପାଖକୁ ଡାକିଲେ
କହିଲେ ତୁମ୍ଭ ସୁତମାନେ ନିତି     ଗଙ୍ଗାଧରଙ୍କୁ କୁତ୍ସିମ ଶିଖାନ୍ତି
ଏହି ସକାଶରୁ
ପର ଦେଶକୁ ଯାନ୍ତୁ ଏହିଠାରୁ । ୩୧ ।

(୧) ୯୦ ବର୍ଷ

ଦିନ କେତେ ଯିବା ଉତ୍ତାରୁ ମୁହିଁ । ଅଶାଦେବ ମଣ୍ଡାଦେଈଙ୍କି କହି
ତୁମେ ଶତ୍ରୁରେ କହୁ ନ ବଗୁର । ନୂଆଗଡ଼ ଓଡ଼ିଶାକୁ ସତ୍ୱର
ପଠିଆଇ ଦିଅ
ମାନସରେ କପଟକୁ ନ ଥୁଅ । ୩୨ ।

ରାଣୀଙ୍କଠାରୁ ଶୁଣି ଆଠ ରାଜ । ପୁଅମାନଙ୍କୁ ନେଇଗଲେ ଘଜ
ନବଦୁର୍ଗ ଓଡ଼ିଶାକୁ ପେଶିଲେ । ପାଞ୍ଚ ପୁତ୍ର ନେଇ ରାଜ୍ୟକୁ ଗଲେ
ଏକା ଘନଭଞ୍ଜେ
ଧରାକୋଟରେ ଯାଇ ରହିଲେ ଯେ । ୩୩ ।

ସେହିଦିନଠାରୁ ସେ ମଣ୍ଡାଦେଈ । ମାନସେ ଅତି ହରଷକୁ ହୋଇ
ପାଇକମାନଙ୍କୁ ଇନାମ ଦେଲେ । ମାଳକଣ୍ଠଙ୍କ ଅଧୀନେ ରଖିଲେ
ଦନ୍ତାଦନ୍ତ୍ୟ ଆଦି ଯେ
ରଖିଲେ ପାଠ କୁମରଙ୍କ ବାଧା । ୩୪ ।

ମଣ୍ଡାଦେଈ ହୃଦେ କଲେ ବିଗ୍ଚର । ବସ୍ତୁସାଧିକ ହେଲେ ନୃପବର
ସମସ୍ତେ ବିଯୋଗ ହୋଇବେ ଯେବେ । ପାଠ କୁମରଙ୍କୁ ନୃପ କରିବେ
ମୋର କନ୍ତ୍ରି ବଳ
ନ ପାଇବ ସେ ତ ହେବ ଭୂପାଳ । ୩୫ ।

କି ରୂପେ ନୃପ ପ୍ରାଣ ବାଧ କଲେ । ପାଠ କୁମରକୁ ହଣାଇ ଦେଲେ
ଚାର କୁମର ଭଞ୍ଜ ଶତ୍ରୁଞ୍ଜୟ । ତାହାଙ୍କୁ ମଧ୍ୟ କରିଦେଲେ କ୍ଷୟ
ମାଳକଣ୍ଠ ମୋର ଯେ
ସୁଖେ ହୋଇବ ଏଥେ ନରବର । ୩୬ ।

ଏହି ରୂପରେ ଗଲା କେତେ ଦିନ । ଗୋବିନ୍ଦ ଭଞ୍ଜ ଆଠ ରାଜା ପୁଣ
ପୁତ୍ରମାନେ ସନ୍ନିଧିରୁ ଯିବାରୁ । ମାନସରେ ଚିନ୍ତାକୁ କଲେ ଗୁରୁ
ଏହିଠାରୁ ଯେବେ ଯେ
ବାହାରିଯିବା ନ ରହିବା ତେବେ । ୩୭ ।

ଏହି ସମୟରେ ଓଡ଼ିଶା ନୃପ । ନବଦୁର୍ଗ ମାନ୍ଧାତାଙ୍କୁ ସେ କୋପ
ବହୁ ଲସ୍କରକୁ କରି ତୟାର । ଯୁଝିବାକୁ ସେ କରନ୍ତେ ବିଗ୍ଚର
ଆଠ ରାଜା ଶୁଣି
ମାନସରେ ବିଚ୍ଚରିଲେ ସେକ୍ଷଣି । ୩୮ ।

ଅତ ଗୁପତେ ମାନ୍ଧାତାଙ୍କଠାକୁ ଚିଠାଉ ଲେଖି ପେଷିଲେ ଦୂତକୁ
ଆନ ରାଜାଙ୍କ ଘୁମୁକୁ ଚିଠାଙ୍କି ଆପଣ ଲେଖି ପଠାଇବା ହେଉ
ଗୋବନ୍ଦ ଭଞ୍ଜଙ୍କୁ
ପଠିଆଇ ଦେବ ଆମ୍ଭ ରାଜ୍ୟକୁ । ୩୯ ।

ଓଡ଼ିଶା ରାଜା ତ ତାଙ୍କ ଜନ୍ମାଇଁ ଆମ୍ଭଠାରେ କ୍ରୋଧ ଅନନ୍ତ ହୋଇ
ସେ ଆସିଲେ ତ ଓଡ଼ିଶାକୁ ଯିବେ ତାଙ୍କୁ ଆମ୍ଭଙ୍କୁ ପ୍ରୀତି କରାଇବେ
ଚିଠାଉ ଏ ରୂପେ ଯେ
ଆଠ ରାଜା ଲେଖି ପେଷିଲେ ଆପେ । ୪୦ ।

ମାନ୍ଧାତା ସେହୁ ଚିଠାଉକୁ ଶୁଣି ରାଇବାର ପେଷିଦେଲେ ସେକ୍ଷଣି
ସେହି ରୂପରେ ଚିଠାଉ ଲେଖାଇ ପେଷିଦେଲେ ଭଞ୍ଜ ରାଜାଙ୍କୁ ତହିଁ
ଯେ ଦୂତ ଆସିଲା ସେ
ଭଞ୍ଜ ରାଜାଙ୍କୁ ସେ ଚିଠାଉ ଦେଲା । ୪୧ ।

ତାହା ଶୁଣି ଭଞ୍ଜ ନୃପବର ଆଠ ରାଜାଙ୍କୁ ଡ଼ାକଲେ ସତ୍ୱର
କହିଲେ ତୁମ୍ଭେ ନୂଆଗଡ଼ ଯିବ ମାନ୍ଧାତାଙ୍କଠାରେ ଦେଖା ହୋଇବ
ଓଡ଼ିଶାକୁ ଯାଇ ସେ
ତାଙ୍କୁ ସମାଧାନ କରିବ କହି । ୪୨ ।

ମାନ୍ଧାତାଙ୍କଠାରେ ସେ ବଡ଼ କ୍ରୋଧ କରିଛନ୍ତି ତାହାଙ୍କୁ କର ବୋଧ
ଲସକର ତାଙ୍କ ନବର୍ତ୍ତାଇବ ଅନ୍ତ ଘଉରେ ବାହାରି ଆସିବ
ଆଠ ରାଜା ଶୁଣି ସେ
ନବଦୁର୍ଗକୁ ଗଲେ ସେହିକ୍ଷଣି । ୪୩ ।

ମାନ୍ଧାତାଙ୍କଠାରେ ଦେଖା ହୋଇଲେ ବେନି ପୁନି ତ ସେହିଠାରେ ଥିଲେ
ରହିଲେ ଘର କରି ସେହିଠାରେ ଗୁମୁସରକୁ ନ ଆସିଲେ ଥରେ
ଏଥୁଅନ୍ତେ ନର
ଶୁଣ ମଣ୍ଡାଦେଈଙ୍କ ଦୁର୍ବିଗ୍ଭର । ୪୪ ।

ରାଜାଙ୍କର ପ୍ରାଣ ଯିବା ବକ୍ଷରେ ଗଙ୍ଗାଧର ପାଠ କୁମର ଶିରେ
ଶାଢ଼ୀ ଦେଇ ନୃପ କରିବେ ଏଥି ପଛେ ମୁଁ ଯିନା ହୋଉଥିବ ବ୍ୟଥି
ଏବେ ଉପାୟରେ
ରାଜାଙ୍କ ଜୀବନ ନେବି ସତ୍ୱରେ । ୪୫ ।

ଗଙ୍ଗାଧର ଭଞ୍ଜଙ୍କୁ ହଣାଇବ ତା ସୁତ ଶତ୍ରୁଞ୍ଜୟକୁ ହାଣିବ
ଏମନ୍ତ କଲେ ମୋ ପୁତ୍ର ରାଜତ୍ୱ ଏ ରାଜ୍ୟେ କରିବ ହୋଇ ନିଶ୍ଚିତ
ଏତେ ଭାଳି ଚିତ୍ତ
ଚମ୍ପାନାମୀ କି କହିଲେ ଏକାନ୍ତେ । ୪୬ ।

ନୃପତି ତ ପାନ୍ତୁଆରୁ ନିତି ସରୁ ଚକୁଳି ଯୋଗାଣ କରନ୍ତି
ଦୁଧ ସଙ୍ଗତେ ବିଷ ମିଶାଇବୁ ରାଜାଙ୍କ ଯୋଗାଣ ନିମିତ୍ତ ଦେବୁ
ତତେ ଗ୍ରାମ ଏକ
ଇନାମରେ ଦେବି କର ବିବେକ । ୪୭ ।

ଏହା ଶୁଣି ସେହି ବ୍ରାହ୍ମଣୀ ଚମ୍ପା କେତେ ମାତ୍ର ନକଲା ଅନୁକମ୍ପା
ସରୁ ଚକୁଳି ଦୁଧ ସଙ୍ଗେ ବିଷ ମିଶାଇ ଦେଲା ସେ କରି ସାହସ
ନୃପ ତାହା ସାରି
ତଳ ପଡ଼ିଲେ ଜୀବନକୁ ହାରି । ୪୮ ।

ମଣ୍ଡାଦେଈ ଆଗେ ଯାଇ କହିଲା ନୃପବରଙ୍କର ପରାଣ ଗଲା
ତାହା ଶୁଣି ନୀଳକଣ୍ଠ ଭଞ୍ଜଙ୍କୁ ଡାକି କହିଲେ ଏମନ୍ତ ଗିରକୁ
ପ୍ରାଣ ନୃପଙ୍କର
ଗଲା ତ ଏବେ ବିଚାରକୁ କର । ୪୯ ।

ଦଳାଦଳନ୍ୟାଦି ଲୋକଙ୍କୁ ଘେନି ଗଙ୍ଗାଧରକୁ ବେଗେ ଦିଅ ହାଣି
ଶତ୍ରୁଞ୍ଜୟ ଭଞ୍ଜକୁ ହିଁ ହଣାଅ ସୁଖେ ଏ ରାଜ୍ୟେ ନରପତି ହୁଅ
ଏ ବଚନ ଶୁଣି
ନୀଳକଣ୍ଠ ଦଳାଦଳନ୍ୟକୁ ଘେନି । ୫୦ ।

ଗଙ୍ଗାଧର ପାଟ କୁମର ଘରେ କବାଟ ଟେକି ପଶିଲେ ଭିତରେ
ଗଙ୍ଗାଧର ଭଞ୍ଜ ଚେତାକୁ ପାଇ ପଳାଉଥିଲେ ପାଚେରିକି ଡେଇଁ
ଏହି ସମୟରେ
ଦଳାଦଳନ୍ୟ ହାଣିଦେଲା ସତ୍ୱରେ । ୫୧ ।

ଶତ୍ରୁଞ୍ଜୟ ଭଞ୍ଜ ତାଙ୍କ କୁମର ପଳାଉଥିଲେ ସେ ହୋଇ ସତ୍ୱର
ଦଳାଦଳନ୍ୟାଦି ଶୀଘ୍ରରେ ଗୋଡ଼ାଇ ଖଣ୍ଡାରେ ହାଣିଦେଲେ ସେ ବଢ଼ାଇ
ତାଙ୍କର ଭାରିଯା ଯେ
ଗର୍ଭ ହୋଇଥିଲେ ସେ କଥା ଜାଣି । ୫୨ ।

ଗ୍ରାମୁ ପାଇଁ କେତେ ଯେ ଜମା ହେଲେ    ତାଙ୍କୁ ଘେନି ସେଠାରୁ ପଳାଇଲେ
କରଡ଼ାବାରଦା ଗ୍ରାମରେ ଯାଇ    ରହିଲେ ଘେନି ସେନ୍ୟ ମହାଦେଈ
ନୀଳକଣ୍ଠ ଭଞ୍ଜେ ଯେ
ରାଜତ୍ୱ କଲେ ଗୁମୁସର ରାଜ୍ୟ । ୫୩ ।

ଧନଞ୍ଜୟ ଭଞ୍ଜ ନୃପଙ୍କର    ଗଙ୍ଗାଧର ଭଞ୍ଜେ ପାଟକୁମର
ବେନି ଜନର ପରଲୋକ କର୍ମ    କଲେ ଆପଣେ ଆଚରଣ ଧର୍ମ
ପଞ୍ଚଷଷ୍ଟି ବର୍ଷ ଯେ
ଧନଞ୍ଜୟ ଭଞ୍ଜେ ହୋଇଲେ କ୍ଷୀଣ । ୫୪ ।

ବାରଣ ତାରଣ ଚରଣ ଧ୍ୟାନ    କରି ସୂର୍ଯ୍ୟମଣି ଚ୍ୟାଉ ଏ ମାନ
ବୃଦ୍ଧଜନମାନଙ୍କଠାରୁ ଶୁଣି    ଯଥାର୍ଥ କରି କହଇ ଏ ବାଣୀ
ଏ ଚତୁର୍ଥ ଛାନ୍ଦ ଯେ
ଏଠାରେ ଶେଷ ହେଲା ବୃଦ୍ଧବୃନ୍ଦ । ୫୫ ।

---

## ପଞ୍ଚମ ଛାନ୍ଦ

[ ରାଗ--- ଆହାରି ]

ଏଥୁ ଅନ୍ତେ ଶୁଣ ଜନେ ଦେଇ ହୃଦ
ନୀଳକଣ୍ଠ ଭଞ୍ଜେ ଲଭି ଅତି ମୋଦ । ୧ ।
ଗୁମୁସର ରାଜ୍ୟ ନରପତି ହେଲେ
ଅଯଶକୁ ସବୁ ଦେଶେ ଖ୍ୟାତ କଲେ । ୨ ।
ପିତା ଭ୍ରାତ ପୁତ୍ରୁ ତିନିକ ମାରି
ନୀଳକଣ୍ଠ ଭଞ୍ଜେ ହେଲେ ଧଣ୍ଡଧାରୀ । ୩ ।
ଏହି ରୂପେ ସବୁଠାରେ ହେଲା ଖ୍ୟାତ
ଯେ ଶୁଣିଲେ ନିନ୍ଦା କଲେ ସେ ବହୁତ । ୪ ।
ଘନ ଭଞ୍ଜେ ଜୟ ଧରାକୋଟରେ ଥିଲେ
ନୀଳକଣ୍ଠ ଭଞ୍ଜ ଦୁର୍ନୀତି ଶୁଣିଲେ । ୫ ।

ଧରାକୋଟ ରାଜାଙ୍କୁ ସମସ୍ତ କହି
ଶତ୍ରୁଂଲୋକ ଘେନି ବାହାରିଲେ ସେହି । ୬ ।

ସୋରଡ଼ା ବାଟରେ ଆସି ବାରିବାରେ
ପରବେଶ ହୋଇଲେ ଅନ୍ତ ସଭରେ । ୭ ।

ଶତ୍ରୁଞ୍ଜୟ ଭଞ୍ଜ ରାଣୀୟା ସେହିଠାରେ
ଗର୍ଭହୋଇ ରହିଥିଲେ ଦୁଃଖିତରେ ।୮।

ତାହାଙ୍କର ଏକ ପୁତ୍ର ଜନ୍ମ ହେଲେ
ରଣ ଭଞ୍ଜ ବୋଲି ତାଙ୍କୁ ନାମ ଦେଲେ । ୯ ।

ତାଙ୍କୁ ସେହିଠାରୁ ଘେନି ସଙ୍ଗତରେ
ପରବେଶ ହେଲେ ଗାଁବଲଶ୍ମ ମୁଠାରେ । ୧୦ ।

ଗ୍ରାମ ଗରୁଡ଼ରେ ଯାଇ ବାସ କଲେ
ମାଳ କନ୍ଧମାନଙ୍କୁ ଖବର ଦେଲେ । ୧୧ ।

କନ୍ଧ ମଲିକ (୧) ସ୍ୱଗାଳମାନେ ଆସି
ଘନ ଭଞ୍ଜଙ୍କୁ ଭେଟିଲେ ହୋଇ ତୋଷି । ୧୨ ।

ପିତା ଭ୍ରାତା ପୁତ୍ରଙ୍କୁ ମାରିବାର
ପୂର୍ବରୁ ତ ଶୁଣିଥିଲେ ଶ୍ରବଣର । ୧୩ ।

ମାଳକଣ୍ଠ ଭଂଜଠାରେ କ୍ରୋଧ ହେଲେ
ତାଙ୍କୁ ମାରି (୨) ଖେଡ଼ଦବା ବରୁରିଲେ । ୧୪ ।

ବାଳକୁମାର ରଣ ଭଞ୍ଜଙ୍କୁ ରାଜା
କରି ଗୁମୁସରରେ କରିବା ପୂଜା । ୧୫ ।

ଘନ ଭଞ୍ଜଙ୍କ ସଙ୍ଗେ ଭାଳ ସମସ୍ତେ
ରଣ ଭଞ୍ଜଙ୍କୁ ରାଜା କଲେ ସୁଚିତ୍ତେ ।୧୬।

ସେହିଦିନ ସରିକି ତେନି ବରଷ
ମାଳକଣ୍ଠ ଭଂଜେ ହୋଇଥିଲେ ଈଶ । ୧୭ ।

ମାଳକନ୍ଧଙ୍କୁ ରଣଭଂଜଙ୍କୁ ଘେନି
ଘନଭଂଜେ ଗଲେ ହୋଇ ଅଭିମାନୀ ।୧୮।

---

(୧) ଏକ ଜାତିବିଶେଷ । (୨) ତଡ଼ିଦେବା ।

କୁଲ୍ଲଡ଼ର ନଗରେ ପ୍ରବେଶ ହେଲେ
କନ୍ଧେ ସିଂହାଟମକାଦ ବଜାଇଲେ । ୧୯ ।

ମାଳକଣ୍ଠ ଭଂଜେ ଶୁଣିଲେ କର୍ଣ୍ଣେର
ଘନଭଂଜେ ଘେନ ବହୁ ଲସ୍କର । ୨୦ ।

ରଣଭଂଜଙ୍କୁ ରାଜଛ ଶାଢ଼ୀ ଦେଇ
ସଙ୍ଗ ମଳକାଦ କନ୍ଧଙ୍କୁ ଡ଼କାଇ । ୨୧ ।

ଗାଲେଗ୍ଘ କୋକଳବା ମୁଠା ପାଇକଙ୍କୁ
ସଙ୍ଗେ ଆଣିଲେ ସେ ଯୁଦ୍ଧ କରିବାକୁ । ୨୨ ।

ତାହା ଶୁଣି ମାଳକଣ୍ଠ ଭଂଜେ ଭୟ
କରି ହୃଦକୁ କମ୍ପାଇ ଅତିଶୟ । ୨୩ ।

ଆପଣା ଲୋକଙ୍କୁ ଘେନ ପଳାଇଲେ
ଧରାକୋଟରେ ଯାଇ ପ୍ରବେଶ ହେଲେ । ୨୪ ।

ସେଠାରେ ସେ ଭୟ ପାଇ ନ ରହିଲେ
ଆଠଗଡ଼କୁ ସତ୍ୱରେ ପଳାଇଲେ । ୨୫ ।

ସେହିଠାରେ କେତେ ଦିନ ରହି ପୁଣି
ନୂଆଗଡ଼କୁ ଗଲେ ସବୁଙ୍କୁ ଘେନ । ୨୬ ।

ଖଡ ଢୋଳ ବାଙ୍କିଆ ହଂସୁଲୀ ଭୁଜ
ଜଗଦେବଙ୍କୁ ଦେଇ ଗଲେ ବାହାରି । ୨୭ ।

ନୂଆଗଡ଼ର ମାଳ ସାହି ଗ୍ରାମରେ
ରହିଲେ କୁଟୁମ୍ବ ଘେନ ସଜରେ । ୨୮ ।

ତାହାଙ୍କର କୁମର ଉପେନ୍ଦ୍ର ଭଂଜ
ଗ୍ରନ୍ଥ କବିତ୍ୱରେ ସେହି କବିରାଜ । ୨୯ ।

ତାହାଙ୍କର ଅନ୍ୱୟ କେହି ନ ଥିଲେ
ସେହି ମାଳ ସାହି ଗ୍ରାମରେ ରହିଲେ । ୩୦ ।

ଏଥୁ ଅନ୍ତରେ ଶୁଣ ସୁବୁଦ୍ଧି ଜନ
ଘନଭଂଜଙ୍କର ଆଚରଣ ମାନ । ୩୧ ।

ରଣଭଂଜଙ୍କୁ ନୃପତି ନାମ ଦେଇ
ସବୁ ଅଧିକାର କଲେ ନୃପ ହୋଇ । ୩୨ ।

ସ୍ବରଗୋଟି ସମ୍ବତ୍ସର ଏହିପରି
ରାଜା ହେଲେ ରଣଭଂଜ ଦଣ୍ଡଧାରୀ । ୩୩ ।

ପାଞ୍ଚବର୍ଷ ପ୍ରବେଶରେ ଦିନେ ହେନ
ଭଞ୍ଜେ ବୁଲିଯିବାକୁ ବଳିଲା ମନ । ୩୪ ।

ରଣଭଞ୍ଜଙ୍କୁ ସଙ୍ଗରେ ନେଇଗଲେ
ପଥେ ଗଭୀର କୂପକୁ ନ ଦେଖିଲେ । ୩ ।

ସେ ପିଲାକୁ ଧରି ପେଲିଦେଇ ଖରେ
ଯାଇ ପଡ଼ି ପ୍ରାଣ ଗଲା କୂପ ମଧ୍ୟରେ । ୩୬ ।

କୂପେ ପଡ଼ି ମଲା ବୋଲି ଖ୍ୟାତ କଲେ
ଆପେ ଗୁମୁସରେ ନୃପ ହେଲେ ଭଲେ । ୩୭ ।

ଏହି ରୂପେ ସବୁ ଜମିଦାର ସ୍ଥଳେ
ଖ୍ୟାତ ହୋଇଲା ରଣଭଞ୍ଜଙ୍କୁ ମାରିଲେ । ୩୮ ।

ଆପେ ନରପତି ହେଲେ ଘନ ଭଂଜେ
ଖ୍ୟାତ ହୋଇଲା ଏହି ରୂପେ ସବୁ ରାଜ୍ୟେ । ୩୯ ।

ମୁଗଲ ନବାବଙ୍କଠାରେ ସେହିପରି
ଖବରକୁ ହେଲା ଏହା ଶୁଣିକରି । ୪୦ ।

ଗୁମୁସରକୁ ଲସ୍କର ପଠାଇଲେ
ଘନଭଞ୍ଜଙ୍କୁ ଧରାଇ ନେଇଗଲେ । ୪୧ ।

ଇଚ୍ଛାପୁରରେ ରଖିଲେ ତାଙ୍କୁ ନେଇ
ଏହି ରୂପେ କେତେ ଦିନ ଗଲା ତହିଁ । ୪୨ ।

ନବାବଙ୍କଠାରେ ଥିଲା ଘୋଡ଼ା ଏକ
ତାକୁ ଚଢ଼ି ନ ପାରନ୍ତି କେହି ଲୋକ । ୪୩ ।

ଘନଭଞ୍ଜେ ଚଢ଼ି ପାରନ୍ତି ତ ଘୋଡ଼ା
ତାଙ୍କ ସମାନେ ସିପାହି ନାହିଁ ଯୋଡ଼ା । ୪୪ ।

ନବାବ ତ ଜନ ମୁଖୁ ଏହା ଶୁଣି
ଘନଭଞ୍ଜ ରାଜାଙ୍କୁ ଡ଼କାଇ ଆଣି । ୪୫ ।

କହିଲେ ଯେ ଘୋଡ଼ା ତୁମେ ଚଢ଼ିପାର
ଦେଖ ଚଢ଼ି ଥରେ ଏହୁ ଘୋଡ଼ାପର । ୪୬ ।

ତାହା ଶୁଣି ଧନଭଞ୍ଜେ ସଜ୍ଜ କଲେ
ଟସ ଘୋଡ଼ାର ପୃଷ୍ଠରେ ଯାଇ ବସିଲେ । ୪୭ ।
ବେଳ ଶତ ସିପାହି ଯେ ଘୋଡ଼ା ଚଢ଼ି
ନୃପଙ୍କର ଗୃହପାଖ ଦେଲେ ବେଢ଼ି । ୪୮ ।
ଦୁଇ ଗୃହ ଅରଟ ହଲାଇ ଘୋଡ଼ା
ଆଣ୍ଠ କରି ମାରିଦେଲେ କୋରଡ଼ା । ୪୯ ।
ପବନରୁ ଅଧିକ ସେ ଗତି କଲା
ଲସକର ବେଢ଼ିବାରୁ ବଳିଗଲା । ୫୦ ।
ଘୋଡ଼ାମାନ ଦଉଡ଼ାଇ ଧୂଆଁଇଲେ
ବେଗଗତି ଜନେ ତାଙ୍କୁ ପାରି ହେଲେ । ୫୧ ।
କେତେ ଦୂର ଗୋଡ଼ାଇ ସେ ନବର୍ତ୍ତିଲେ
ଗୁମୁସରକୁ ରାଜା ଗମନ କଲେ । ୫୨ ।
ବିଷ୍ଣୁଚକ୍ର ମୁଠା ସୋରଡ଼ ପର୍ଯ୍ୟନ୍ତେ
ଯାଇ ସେଠାରେ ରହି ଭାବିଲେ ଚିତ୍ତେ । ୫୩ ।
ଜମିଦାରମାନେ ଆମ୍ଭ ସଙ୍ଗେ ପ୍ରୀତି
କେହି ହେଲେ ଜଣେ କରି ନାହାନ୍ତି । ୫୪ ।
ମାଳ କନ୍ଧମାନେ ଆମ୍ଭଙ୍କୁ ବିପକ୍ଷ
ହୋଇଛନ୍ତି ରାଜ୍ୟେ ଆମ୍ଭ ନାହିଁ ପକ୍ଷ । ୫୫ ।
ନବାବଙ୍କ ବନ୍ଦୀରୁ ତ ଆସିଲୁଁ
ଯଉଁଠାରେ ରହିବା ସୁଖୀ ତ ହୋଇ । ୫୬ ।
ଘୋଡ଼ାକୁ ସେଠାରେ ଛାଡ଼ପର୍ଯ୍ୟ କଲେ
ଆପଣା ହିଁ ଜଳପାନକୁ ସାରିଲେ । ୫୭ ।
ସେହିଠାରୁ ଘୋଡ଼ାକୁ ସେ ବାହୁଡ଼ାଇ
ଇଚ୍ଛାପୁରରେ ପ୍ରବେଶ ହେଲେ ଯାଇ । ୫୮ ।
ନବାବଙ୍କଠାରେ ଯାଇ ଦେଖା ହେଲେ
ଘୋଡ଼ା ବଳଆଇ ନେଲା ସେ କହିଲେ । ୫୯ ।
ଗୁମୁସର ସୋରଡ଼ଠାରୁ ମୁଁ ଏକା
ବାହୁଡ଼ିଲି ନ କରି ତୁମ୍ଭଙ୍କୁ ଶଙ୍କା । ୬୦ ।

ଯାହା ଇଚ୍ଛା ହେବ ତା ଆପଣଙ୍କର
ପରବେଶ ହେଲ ତ ତୁମ୍ଭ ପାଖର । ୭୧ ।

ତାହା ଶୁଣି ନବାବ ସନ୍ତୋଷ ହେଲେ
ଇଚ୍ଛାପୁର ଶନିବାର ପେଣ୍ଠ ଦେଲେ । ୭୨ ।

ଏ ବାହାରେ ସାରୁସର୍ଗିଙ୍କର ଗ୍ରାମକୁ
ଇନାମ ଦେଲେ ଯେ ନୃପ ପ୍ରବରଙ୍କୁ । ୭୩ ।

ସପତ ହଜାର ଟଙ୍କା ମାମିଲ ତ
କର ଗୁମୁସର ରାଜ୍ୟରେ ରାଜତ୍ୱ । ୭୪ ।

ସମର୍ପଣ କରି ସଙ୍ଗେ ଲସ୍କରକୁ
ଦେଇଣ ପଠାଇଲେ ଗୁମୁସରକୁ । ୭୫ ।

କୁଲଡ଼ ଗଡ଼ରେ ପରବେଶ ହେଲେ
ମାଳକନ୍ଧ ମଲ୍ଲିକଙ୍କୁ ଡ଼ାକାଇଲେ । ୭୬ ।

ତାଲୁକାରେ ଥିବା ସର୍ବ ସରଦାର
ଆଦି ପାଇକଙ୍କୁ ଡ଼ାକାଇ ସତ୍ୱର । ୭୭ ।

ସବୁ ପ୍ରଧାନମାନଙ୍କୁ ଡ଼ାକାଇଲେ
ନବାବଙ୍କ ଅନୁଗ୍ରହକୁ କହିଲେ । ୭୮ ।

ସର୍ବ ଲୋକଙ୍କୁ ସେ ଆପ୍ୟାୟିତ କରି
ଗୁମୁସର ରାଜ୍ୟେ ହେଲେ ଦଣ୍ଡଧାରୀ । ୭୯ ।

(୧) ଷଠଦଶ ଚତୁର୍ବିଂଶ ଶକାବ୍ଦରେ
ନରପତି ହେଲେ ସେହୁ ଗୁମୁସରେ । ୮୦ ।

ସର୍ବ ଜମିଦାରଙ୍କୁ ସେ ସାଧିକଲେ
ମାଳକନ୍ଧଙ୍କୁ ବଶ କରି ରଖିଲେ । ୮୧ ।

ରାଜ୍ୟ ପରଜାଙ୍କୁ ପୁତ୍ର ପରି ପାଳି
ଭୋଗକଲେ ଗୁମୁସର ମହୀଆଳୀ । ୮୨ ।

ସାତ ମହାଦେବୀ ସେ ବିବାହ ହେଲେ
କୋଠ ଲୋକ ନାଚୁଣି ବିଶେଷ କଲେ । ୮୩ ।

(୧) ୧୭୦୨ ଖ୍ରୀଷ୍ଟାବ୍ଦ ।

ନବ ଔରସ୍ୟୁ କୁମର ହେଲେ ଜାତ
ଏ ବାହାରେ ଅନ୍ତର ପାଞ୍ଚୋଟା ସୁତ । ୭୪ ।

ଜ୍ୟେଷ୍ଠ କୁମର ହୋଇଲେ କୃଷ୍ଣ ଭଞ୍ଜେ
ଯୁବରାଜ ହେଲେ ଗୁମୁସର ରାଜ୍ୟେ । ୭୫ ।

ପଞ୍ଚମ ଛାନ୍ଦ ଏଠାରେ ହେଲା ଶେଷ
ଶୁଣି ସଜ୍ଜନ ମନ ହୋଇବ ତୋଷ । ୭୬ ।

ବାରଣ ତାରଣ ଚରଣକୁ ଧ୍ୟାଇ
ସଂଯମଣି ଚମ୍ପୁଜ ଏହୁ ଗୀତ କହି । ୭୭ ।

---

# ଷଷ୍ଠ ଛାନ୍ଦ

ରାଗ— କେଦାର କାମୋଦ ।

ଏଥ ଅନ୍ତରେ ଶୁଣ ସୁବୁଦ୍ଧି ଚୟ
ଗୁମୁସର ରାଜ୍ୟର ପୂର୍ବ ନିର୍ଣ୍ଣୟ ହେ
ସମସ୍ତ ଜମିଦାରେ ଥିଲେ ବଳବନ୍ତ
ଏ ତ ଅଟନ୍ତି ଥାଟ ରାଜକୁମର । ୧ ।

ପାପ ବୁଦ୍ଧିରେ ପୁରୁଷ ପୁର୍ବ ମାର
ହୋଇଅଛନ୍ତି ଆପ ଦଣ୍ଡଧାରୀ ଯେ
ଆମ୍ଭେ ସମସ୍ତେ ଏକମନ ହୋଇବା
ତାହାଙ୍କୁ କେହି ପ୍ରଣାମ ନ କରିବା ହେ । ୨ ।

ତାହାଙ୍କୁ କେହି ନ ଲେଖିବା ଚତୁର
ଆଚରଣରେ ମଧ୍ୟ କଲେ ସେପରି ହେ
ସେ କଥା ଜାଣିଲେ ଧନଭଞ୍ଜ ନୃପତି
ଜମା କରଣ ସେହୁ ଲୋକପନ୍ତି ଯେ । ୩ ।

ଜମିଦାରମାନଙ୍କ ରାଜ୍ୟକୁ ଗଲେ
ଦ୍ରବ୍ୟ ଲୁଟି ଗ୍ରାମକୁ ଦହନ କଲେ
ଏହାର ପରେ ବେନି ବର୍ଷ ଭିତରେ
ଜମିଦାରଙ୍କୁ ବଶକଲେ କ୍ରମରେ ଯେ । ୪ ।

ଏ ଉତ୍ତାରୁ ଯେ କେତେ ଦିନ ପରେ
(୧) ରାମଚନ୍ଦ୍ର ଦେବ ନୃପ ଓଡ଼ିଶାରେ ଯେ
ରାଜଭକ୍ତି କରନ୍ତେ ନବାବ ଘର
ପ୍ରବେଶ ହେଲେ ଆସି ଘେନି ଲସ୍କର । ୫ ।

ରାମଚନ୍ଦ୍ର ଦେବ ଧଙ୍ଗେ ଲଢ଼ାଇ
କରି କଟକ କିଲ୍ଲା ଦେଲେ ଛଡ଼ାଇ
ଅଳପ ଲୋକ ଧରି ସେ ନରପତି
ଓଡ଼ିଶାରୁ ଶୀଘ୍ରରେ କରଣ ଗତି ଯେ । ୬ ।

ଆପେ ଗଡ଼ରେ ଆସି ପ୍ରବେଶ ହେଲେ
କେତେ ଦିନ ସେଠାରେ (୨) ମୁକାମ୍ କଲେ ଯେ
ଭଞ୍ଜରାଜନ ଶୁଣି ଆପେ ଗମନ
(୩) ସାତଗଡ଼ ସନ୍ଧିକି କରି ଗମନ ଯେ । ୭ ।

ରାମଚନ୍ଦ୍ର ଦେବଙ୍କ ଶ୍ରୀମୂର୍ତ୍ତି ଘେନି
ଦେଖାହୋଇ ବହୁତ ପ୍ରକାର କହି ଯେ
ଗୁମୁସରକୁ ତାଙ୍କୁ ଘେନି ଆସିଲେ
ଜଗନ୍ନାଥପ୍ରସାଦ ଗଡ଼େ ରଖିଲେ ଯେ । ୮ ।

କେତେ ଦିନ ତାହାଙ୍କୁ ରଖି ସେଠାରେ
ଗାଲେରିଠାକୁ ଘେନି ଆସିଲେ ଖରେ ଯେ
ଦୁଇ ମାସ ତାହାଙ୍କୁ ତହିଁ ରଖାଇ
ବହୁତ ଲସକର (୪) ତ୍ୟାର କରାଇ ଯେ । ୯ ।

---

(୧) ଇତିହାସ କହେ ଯେ ରାମଚନ୍ଦ୍ର ଦେବ ମୁସଲମାନ ଧର୍ମ ଗ୍ରହଣ କରି ମଧ୍ୟ ଜଗନ୍ନାଥଙ୍କୁ ରକ୍ଷା କରିବା ପାଇଁ ଆଜୀବନ ସଂଗ୍ରାମ କରିଥିଲେ । ୧୭୦୩ ଖ୍ରୀଷ୍ଟାବ୍ଦରେ ସେ ଜଗନ୍ନାଥଙ୍କୁ ଧରି ଆଠଗଡ଼ର ମାରଦା ଜଙ୍ଗଲକୁ ଆସିଥିଲେ ଓ ଗୁମୁସରର ଆଶ୍ରୟ ପ୍ରାର୍ଥୀ ହୋଇଥିଲେ । (୨) ରହିବା । (୩) ଗୁମୁସର ଓ ବଉଦ ସୀମାରେ ରହିଥିବା ସାତଗଡ଼କୁ ସାତଗଡ଼ ସନ୍ଧି କୁହାଯାଇଥାଏ । ପୂର୍ବେ ବଦାଙ୍ଗି ଓ ଚକାପାଦ ପରେ ସାତଗୋଟି ଗଡ଼ ରହିଥିଲା । (୪) ତିଆରି ।

କଟକରେ ତୁମ୍ଭଙ୍କୁ ରଖିବୁ ନେଇ
ସଙ୍ଗରେ ବହୁତ ସମ୍ପତ୍ତିକୁ ଦେଇ ଯେ
ବହୁତ ରୂପେ ତାଙ୍କୁ ଦେଇ ଭରସା
ଓଡ଼ିଶାକୁ ପେଶନ୍ତେ ସେ ମହାଯଶା ଯେ । ୧୦ ।

ଷଡ଼ବିବର ଦେଉ ବୋଲ ତାହାଙ୍କୁ
ରାମଚନ୍ଦ୍ର ଦେବ କଲେ ଗମନକୁ ଯେ
ଘୁମୁସର ଲସ୍କର ଆଗ ଭଗ୍ନରେ
ଯାଇ ଯୁଦ୍ଧକୁ କଲେ ସେ କଟକରେ ଯେ । ୧୧ ।

ନବାବ ଲସ୍କରଙ୍କୁ ଘଉଡ଼ ଦେଇ
ରାମଚନ୍ଦ୍ର ଦେବଙ୍କୁ ତହିଁ ବସାଇ ଯେ
ସହର୍ଷ ହୋଇ ଶୀଘ୍ରରେ ବାହୁଡ଼ିଲେ
ଗୁମୁସରରେ ଆସି ପ୍ରବେଶ ହେଲେ ଯେ । ୧୨ ।

ନରପତିଙ୍କ ଗ୍ରାମୂରେ ଦେଖା ହୋଇ
ଶାଢ଼ୀ ଖଣ୍ଡ ପଦ ବହୁ ମାନ ପାଇ ଯେ
ନିର୍ଶ୍ଚିନ୍ତ ହୋଇ ଗୁମୁସରେ ରହିଲେ
ଏହି ରୂପରେ କେତେ କାଳ ହିଁ ଗଲେ ଯେ । ୧୩ ।

ଗୁମୁସରରେ ମହା ରାଜତ୍ୱ କରି
ଯଶମାନଙ୍କୁ ରଖିଲେ ଦଣ୍ଡଧାରୀ
ଷଡ଼ବିବରପୁର ଶାସନ କଲେ
ଦେବାଳୟ ଆରାମମାନଙ୍କୁ ଭଲେ ଯେ । ୧୪ ।

ପଥରେ ପାଣିପଣା ଛତ୍ରମାନ
ଦେଇ ସନ୍ତୋଷ କଲେ ଅର୍ଥୀଙ୍କ ମନ ଯେ
(୧) ସପ୍ତବିଂଶ ବରଷଠାରୁ ନୃପତି
ପାଳନା କଲେ ଏ ଗୁମୁସର କ୍ଷିତି ଯେ । ୧୫ ।

---

(୧) ଚେତଣ ।

ପୁଷ୍କରଣୀ କୂପାଦିମାନଙ୍କୁ କଲେ
ଦାନମାନଙ୍କେ ବିପ୍ରମନ ତୋଷିଲେ ଯେ
ତେଜବନ୍ତରେ ସୂର୍ଯ୍ୟ ପରାପ୍ତ ହେଲେ
ଚନ୍ଦ୍ର ପରାପ୍ତେ ଆହଲ୍ଲାଦକୁ କଲେ ଯେ ।୧୬।

ସର୍ବ ଦିଗରେ ଖ୍ୟାତ ହୋଇଲା ଯଶ
ଘନଭଞ୍ଜ ନୃପତି ହୁଅନ୍ତେ ଈଶ ଯେ
ତାଙ୍କର ଏକ ନାମ ଯେ ଲୋକନାଥ
ଭଞ୍ଜ ବୋଲି ଲୋକରେ ହୋଇଲା ଖ୍ୟାତ ଯେ ।୧୭।

କୃଷ୍ଣବର୍ଣ୍ଣ ସ୍ୱକାଶୁ ତାହାଙ୍କୁ ଘନ
ଭଞ୍ଜ ବୋଲିଣ ତାଙ୍କ ପିତା ବଚନ ଯେ
(୧) ସପ୍ତବିଂଶ ବରଷ କରି ରାଜତ୍ୱ
କାଳପୂରନ୍ତେ ରାଜା ହୁଅନ୍ତେ ମୃତ ଯେ ।୧୮।

ତାହାଙ୍କ ସୁତ କୃଷ୍ଣଭଞ୍ଜ ନୃପତି
ହୋଇଲେ ଜାଣ ଏ ଗୁମୁସର କ୍ଷିତି ଯେ
ଦେଶ ଚନ୍ଦ୍ରରେ ମଣ୍ଡି ହେଲା ଭୂମଣ୍ଡି
ଆର ଛାନ୍ଦରେ କିଛି କହିବି ମୁହିଁ ଯେ ।୧୯।

ଶ୍ରୀନାରାୟଣ ପଦେ ଦେଇ ମାନସ
ସୂର୍ଯ୍ୟମଣି ତ ଆଜ୍ଞା ହୋଇ ହରଷ ଯେ
ଭଞ୍ଜ ବଂଶମାନଙ୍କ ଚରିତ ଗୀତ
କଲି ଯା ଦୋଷ ନ ଘେନିବ ଶାନ୍ତ ।୨୦।

---

(୧) ସପ୍ତବିଂଶ ।

# ସପ୍ତମ ଛାନ୍ଦ

[ ରାଗ—କାମୋଦ ]

ଏଥୁ ଅନନ୍ତରେ ଶୁଣ ସୁବୁଦ୍ଧି ନରଗଣ ଭଞ୍ଜରାଜ ବଂଶ ଚରିତ
ଯହିଁ ଶ୍ରୀକୃଷ୍ଣ ଭଞ୍ଜ ରାଜ ବଇରିପୁଞ୍ଜ ଗର୍ବ ଗଞ୍ଜନେ (୧) ପାର୍ଥମତ
ସେ ନରବର
ଜନକ ଜନକ ସମାନ ଅଙ୍ଗୀଚନମାନଙ୍କ ଧନ
ସନକାଦି ବନ୍ଦନ ଯଉଁ ପଦ ନଳିନ ଶ୍ରୀ ନାରାୟଣ ଉପାସନ । ୧ ।

ସକଳ ଭୂମଣ୍ଡଳ ବିଦିତ ସାର ମୂଳ ପଣ୍ଡିତ ଗୁମୁସର ନାମେ
ଏକ ଦେଶ ମଞ୍ଜୁଳ ଆଖଣ୍ଡଳ ମଣ୍ଡଳ ଯହିଁ ଭୂପାଳ ବରତେ କ୍ଷମେ
ହେ ସୁରଧାର
ବର୍ଣ୍ଣ ଛନ୍ତି ସଦା ସେବାର ଗୁରୁ କବରୁ ପ୍ରିୟତର
ଗନ୍ଧର୍ବବର ନାଗବର ଭୂଭି ଅପୂର୍ବ ପୁଣ୍ୟଜନଙ୍କର ସେ । ୨ ।

ଏମନ୍ତ ନୃପବର ଅଧିକାରୀ ଯହିଁର ସ୍ୱର୍ଗସୋଦର ସେ ନଗର
ଉପମେୟ ତାହାର ହେବ କେଉଁ ଲେସର ଦିଶୁ ନାହିଁ ମହୀଦେଶର
ସେ ଅନ୍ତର
ତହିଁ ମଧ୍ୟରେ ଅଟେ ସାର କଟକ କୁଲାଡ଼ ନାମର
ଅଳକାପୁର ଶିରୀ ଟଞ୍ଜି ଯେଉଁ ଧନ ତା ଠାରେ ହୋଇ ପ୍ରଭାକର । ୩ ।

ଶନପଣରେ ମାନ ରହିବେ ବୈରୋଚନୀ କାମୀନ ଯେ ସେ କି ସମାନ
ଶିବ ପ୍ରଭୃତି ଦେବ ରହିବେ ହୃଦେ ଭାବ ନିତ୍ୟ ନିତ୍ୟେ ଯୋ ଦାନଗଣ
ଯେ ଶତ ଶତ
ଧେନୁମାନଙ୍କୁ ଅଳଂକୃତ କରି ତାଙ୍କୁ ବତ୍ସ ସହିତ
ସର୍ବଙ୍କ ଦ୍ୱିଜବରମାନଙ୍କର ଯେ କର କରି ଅଛନ୍ତି ସମର୍ପିତ । ୪ ।

ବିପୁଳ ଘର ତୁଳା ଦାନ ଆଦି ନିକର ମହାଦାନମାନଙ୍କୁ ଦେଲେ
ଶ୍ରୀ ଗୋପୀନାଥ ଗୋବିନ୍ଦ ଦାନ ହୋଇ ଆନନ୍ଦ ବିପ୍ରବରଙ୍କ କରେ ଦେଲେ
ସେ ପୁଷ୍କରଣୀ

(୧) ଅର୍ଜୁନ ।

ସ୍ଥାନ ସ୍ଥାନକେ ଶ୍ରେଣୀ ଶ୍ରେଣୀ      କରି ସେହି ନୃପ ଅଗ୍ରଣୀ
ଆଗ୍ରମମାନ ଯେତେ କଲେ ସେ ନୃସିଂହ ମନେ ନକରେଣ ନ ପାରିବ ଗଣି । ୫ ।

କୃଷ୍ଣଶରଣପୁର ଶ୍ରୀ ନାରାୟଣପୁର ନାମେ କରି ଦେଲେ ଶାସନ
ପୁଣି କୃଷ୍ଣଶରଣପୁର ନାମରେ ବେନି ଶାସନ କଲେକ ରାଜନ
ହେ ସାଧୁଜନେ
ଗ୍ରାମମାନଙ୍କେ କେତେ ମହୀ      ଦାନକୁ ଦେଲେ ତୋଷ ବହି
ସେମାନଙ୍କ ଜନାଙ୍କ ରୂପରେ କହିବାକୁ କ୍ଷମକେ ନୋହିବ ଏ ମହୀ । ୬ ।

ଦିବ୍ୟ ପାଷାଣେ (୧) ଶ୍ରୀ ନାରାୟଣ ପ୍ରତିମାକୁ ହରଷେ ନିର୍ମାଣ କରାଇଲେ
ଦୃଢ଼ତର ପାଷାଣେ ଦେଉଳକୁ ନିର୍ମାଣ କରି ବୃନ୍ଦକୁ ଦିଆଇଲେ
ହେ ସାଧୁଜନେ
ମୋହନ ମୁଖଶାଳା କଲେ      ପାଚେରୀ (୨) ନିର୍ମ୍ମ କଲେ ଭଲେ
ଦେଉଳ ଆଦି ପ୍ରତିମାକୁ ପ୍ରତିଷ୍ଠା କରି ପ୍ରଭୁଙ୍କୁ ବିଜେ କରାଇଲେ । ୭ ।

ମଣୋହି ନିମିତ୍ତରେ ବେନି ଗୋଟି ଗ୍ରାମକୁ ଦତ୍ତ କରିଣ ନୃପବରେ
ନାନାପ୍ରକାରେ ଭୋଜ୍ୟ ସାମଗ୍ରୀ କରି ଯେ ନିତ୍ୟ ନିବେଦିଲେ ଗୁମୁଟରେ
ସେ ନୃପବର
ଜଗନ୍ନାଥଙ୍କ ନିମିତ୍ତରେ      ରଚି ଦେଉଳ କୁଲଡ଼ରେ
ନିବାହକୁ କରାଇ ପ୍ରଭୁଙ୍କୁ ତହିଁ ନେଇ ବିଜେ କରାଇଲେ ତହିଁରେ । ୮ ।

ବିଷ୍ଣୁ ଚକ୍ରରେ ଏକ ଦେଉଳ ନିର୍ମା କରି ନାରାୟଣ ପ୍ରତିମା ତହିଁ
ବିଜେ କରାଇ ଭୋଗ ଖଞ୍ଜାଇ କୁଲଡ଼ରୁ ଦର୍ଶନ ନିମିତ୍ତରେ ଯାଇ
ସେ ନୃପବର
ଏ ରୂପରେ ସେ ପାଷାଣରେ      ଏ ବାହାରେ କାଷ୍ଠ ଚୟରେ
ପ୍ରାସାଦ ମଣ୍ଡପକୁ ନିର୍ମାଣ କରାଇଲେ ଅତ୍ୟନ୍ତ ସହରଷ ଭରେ । ୯ ।

ବିଷ୍ଣୁ ପ୍ରତିମା ଶିବ ପ୍ରତିମାମାନଙ୍କୁ ସେ ନିର୍ମାଣ କରି ବସାଇଲେ
ରାଉତମାନଙ୍କର ଘରରୁ ବେନି କନ୍ୟା ନୃପତି ବିବାହ ହୋଇଲେ
ସେ ନୃପବର

---

(୧) କୁଲଡ଼ ନାରାୟଣ ପାଟଣାରେ ନାରାୟଣ ବର୍ତ୍ତମାନ ପୂଜା ପାଉଛନ୍ତି ।
(୨) ନିର୍ମାଣ ।

ଖେମଣ୍ଡି ଏକ କନ୍ୟା ଯନ୍ତ୍ରୀ ହୋଇ ସେ ମହାମନା
ଧରାକୋଟରେ ଖଳାକୋଟରେ ବିଭା ହେଲେ ଦେଖି ସୁନ୍ଦରୀ ବେନି କନ୍ୟା ସେ

ଦଶପଲ୍ଲା ରାଜାଙ୍କ ବେନି କୁମାରୀ ଥିଲେ ଲୋଭେ ତାହାଙ୍କୁ ବିଭା ହେଲେ
ନୂଆଗଡ଼ରେ ପୁରୁଷୋତ୍ତମ ସିଂହ ମାନ୍ଧାତାଙ୍କର କନ୍ୟା ଯେ ଏକ ଥିଲେ
ସେ ନୃପବର
ବଡ଼ ସୁନ୍ଦର ତାଙ୍କୁ ଜାଣି ବିବାହ ହେଲେ ନୃପମଣି
କୃଷ୍ଣଭଞ୍ଜ ରାଜାଙ୍କୁ ମାନ୍ଧାତା ଯେଉଁଠାରେ ନିୟମ କରାଇଲେ ପୁଣି ସେ । ୧୧ ।

ଆମ୍ଭ ନନ୍ଦନୀଠାରେ ତୁମ୍ଭର ଯେଉଁ ପୁତ୍ର ପ୍ରଥମେ ଜନମ ହୋଇବ
ଗୁମୁସର ରାଜ୍ୟରେ ରାଜାଙ୍କୁ କରିବ ଏମନ୍ତ ନିୟମକୁ କରିବ
ସେ ନୃପବର
ସେ ଗିର କରଣ ଶ୍ରବଣ ନିୟମକୁ କରି ସେ ରୂପେଣ
କରି ସେ ନୃପବର ଯନ୍ତ୍ରୀ ହୋଇ ଯତ୍ନର ରାଜ୍ୟକୁ ଆସିଲେ ବହନ ସେ । ୧୨ ।

ସୋରଡ଼ା ଜମିଦାର ଘରୁ ଏକ କନ୍ୟାକୁ ବିବାହ ହେଲେ ନୃପ ଯେନ
ଏ ରୂପେ ଅଷ୍ଟ ମହାଦେଈ ତାଙ୍କର ହୋଇ ବିଶେଷ କୋଠଲୋକମାନ
ସେ ସାଧୁ ନର
ତାଙ୍କ କୁମର ମାନ ଯେତେ କହିବା ଶୁଣ ଏକ ଚିତ୍ତେ
ପ୍ରଥମେ ଧରାକୋଟ ମହାଦେବୀଙ୍କ ହେଲେ ଲକ୍ଷ୍ମଣ ଭଞ୍ଜ ଯେ ନନ୍ଦନ । ୧୩ ।

ନବଦୁର୍ଗ ନୃପତି ମାଂଧାତାଙ୍କର ନାତି ବିକ୍ରମ ଭଞ୍ଜ ଯେ ହେଲେ
ରାଣୀଚ ଘର ନାତି ଜୟମଞ୍ଜୁଳ ଭଞ୍ଜ ନାମ ତାହାଙ୍କୁ ନୃପ ଦେଲେ
ହେ ସାଧୁ ନରେ
ସୋରଡ଼ା ମହାଦେବୀଙ୍କର ପଦ୍ମନାଭ ଭଞ୍ଜ କୁମର
ଖେମଣ୍ଡି ଘର ନାତି ହରିଶରଣ ଭଞ୍ଜ ବୋଲି ଖ୍ୟାତି ଏ ଗୁମୁସର । ୧୪ ।

ଖଳକୋଟ ନୃପଙ୍କ ନାତି ଲକ୍ଷ୍ମୀଶରଣ ସୀତାରାମଶରଣ ଭଞ୍ଜ
ରଙ୍ଗନାଥଶରଣ ଭଞ୍ଜ ନୃସିଂହ ଭଞ୍ଜ ପୁଣି ବିଷ୍ଣୁଶରଣ ଭଞ୍ଜ
ସେ ଦଶପଲ୍ଲା
ସେ ବେନି ମହାଦେବୀଙ୍କର ଜାତ ହେଲେ ବେନିକୁମର
ଯେ ହରିରୁଦ୍ର ଭଞ୍ଜ କନିଷ୍ଠ ଶିବରାମ ଭଞ୍ଜ ନାମ ଖ୍ୟାତ ଅଟେ ସାର । ୧୫ ।

ଏ ରୂପେ ବିବାହିତ ମହାଦେଈଙ୍କୁ ଜାତ ହୋଇଲେ ଦ୍ୱାଦଶ ନନ୍ଦନ
କୋଠଦେଶକରେ ଏକ ଭଞ୍ଜ ଅନାମ ଭଞ୍ଜ ଫେନସିଂହ ଖ୍ୟାଁ ମଧ୍ୟେ ଜାଣ
ହେ ସାଧୁଜନେ
ନୀମକୋଳି ଭଂଜ ଦପଣ୍ଠ      କୁମର ହୋଇଲେ ପ୍ରକଟ
ଏ ରୂପେ ମହାଦେଈ କୋଠଦେଶେଙ୍କୁ ହେଲେ ଜାଣ ହେ ଅଷ୍ଟାଦଶ ପୋତ ।୧୬।

(୧) ଷୋଳଶତ ଚଉରଅଶୀତି ଶକାବ୍ଦରେ ଜ୍ୟୁମ୍ ନାଁ ନବାବ ଆସିଲେ
ପଞ୍ଚାଳଶ ସହସ୍ର ଟଙ୍କା ଜମାବନ୍ଧ କ ସାହେବ ନିର୍ଣ୍ଣୟ କଲେ
ହେ ସାଧୁ ନରେ
କୃଷ୍ଣ ଭଂଜ ରାଜ ଯେପରି      ରାଜଛି ଜାଣ ବସୁନ୍ଧରୀ
ପରଜାଙ୍କୁ ଔରସ କୁମର ପରକାରେଁ ପାଳନା କଲେ ଦଣ୍ଡଧାରୀ ।୧୭।

ଊନବିଂଶ ବରଷର କୃଷ୍ଣଭଞ୍ଜଙ୍କୁ ହୋନ୍ତେ ନୃପତି ଗ୍ରମୁଧରରେ ହେଲେ
ଜମିଦାରମାନଙ୍କୁ ଆପଣା ବଶେ ରଖି ମହୀରେ ଯଶ ବିସ୍ତାରିଲେ
ହେ ସାଧୁ ନରେ
ନବାବମାନଙ୍କୁ ଯୁଝିଲେ      ବିରାମ ଗାଦ ହାରିଗଲେ
(୨) ଅଷ୍ଟପଞ୍ଚାଶ ବର୍ଷ ସମ୍ପୂର୍ଣ୍ଣ ହୁଅନ୍ତେ ସେ ପରମଗତି କ ଲଭିଲେ ହେ

ନୂଆଗଡ଼ରେ ବିବାହ ହେବା ସମୟରେ ନୟନକୁ ... କରିଥିଲେ
ଏଣୁ ସେ ନିବିକ୍ରମ ଭଂଜକୁ ରାଜଶାଢ଼ୀ ନରପତି ବିଧାନ କଲେ
ହେ ସାଧୁ ନରେ
ନିବିକ୍ରମ ଭଂଜେ ନୃପତି      ନରବର ହେଲେ ଖ୍ୟାତି
ଜ୍ୟେଷ୍ଠ କୁମର ଆଉ କନିଷ୍ଠ କୁମରକୁ ରାଜଶାଢ଼ୀ ଦେଲେ ନୃପତି

(୩) ଷୋଡ଼ଶଶତ ପଞ୍ଚାଶୋଇଁ ଶକାବ୍ଦ ଶେଷ ସମୟେ ହୋଇଲେ ନୃପତି
ବିକ୍ରମ ଭଂଜେ ନୃପ ହୁଅନ୍ତେ ସେ ବିଶେଷ ଜନଙ୍କୁ ଦଣ୍ଡଦେଲେ ନିତି
ହେ ସାଧୁ ନରେ
ଜଗଗଣ୍ଡାଦ କେତେ ଦେଲେ      କାହାକୁ ପ୍ରାଣ ବାଧ କଲେ
କେତେ ହେ ଜନମାନେ ସ୍ୱ ରାଜ୍ୟକୁ ଛାଡ଼ିଦେଇ ପର ରାଜ୍ୟେ ବାସକୁ କଲେ

---

(୧) ୧୭୬୨ ଖ୍ରୀଷ୍ଟାବ୍ଦ (୨) ଅଠାବନ ବର୍ଷ (୩) ୧୭୭୩ ଖ୍ରୀଷ୍ଟାବ୍ଦ

ଏ ରୂପେ ତିନି ବର୍ଷ ରାଜତ୍ୱକୁ କରନ୍ତେ ଧର୍ମ କଥା କିଛି ନ କଲେ
ନିରତେ କୋଧ ହୋଇ ଜନକୁ ଦଣ୍ଡ ଦେଇ ଅନ୍ୟାୟ ମାନକ ରଖିଲେ
ହେ ସାଧୁ ନରେ
କୁମ୍ପୁନୀ ଜମାକୁ ନ ଦେଲେ ସାହେବ ମନେ ଦୁଃଖ କଲେ
ଅନ୍ୟାୟରେ ପରଜାମାନଙ୍କୁ ଦଣ୍ଡଦେଇ ଜନଙ୍କ ମନ ଫିଟାଇଲେ ସେ । ୨୧ ।

ଲକ୍ଷ୍ମଣ ଭଞ୍ଜେ ବୃଦ୍ଧ ହେଲେ ଅଦୋଷ ପିତା ତ ଅନ୍ୟାୟକୁ କଲେ
ଆମ୍ଭେ ଜ୍ୟେଷ୍ଠକୁମର ଆଉ କନିଷ୍ଠ ସୁତ ବିକ୍ରମକୁ ରାଜତ୍ୱ ଦେଲେ ସେ
ଆରମ୍ଭ ପୁଣି
ତାହାଙ୍କୁ କରି ନତ ସେବା କାଳକୁ ଆମ୍ଭେ ସିନା ନେବା
ଏହା ବିଚାରି ଜୟମଙ୍ଗଳ ଭଞ୍ଜଙ୍କୁ ରେ ଡାକି କହିଲେ କି କରିବା । ୨୨ ।

ବିକ୍ରମ ଭଞ୍ଜେ ଏଥି ରାଜତ୍ୱ କରୁଥିବେ ଆମ୍ଭେ ସିପାହି ହୋଇକରି
କି ରୂପେ ଦିନ ନେବା ଏଠାନ୍ତୁ ବେଗେ ଯିବା ଏମନ୍ତ ବିଚାର କରି
ସେ ଏହା କହି
ଦିବ୍ୟ ଘୋଡ଼ା ଶୀଘ୍ର ଚଢ଼ିଲେ ପୁଣ ଶ୍ରୀକର ଭଞ୍ଜେ ଥିଲେ
ଜୟମଙ୍ଗଳ ଭଞ୍ଜେ ସେ ରୂପେ ଘୋଡ଼ା ଚଢି ଏହାଙ୍କ ସଙ୍ଗେ ବାହାରିଲେ ସେ

ଆସିକାଠାରେ (୧) ଖରଦୋଧିଲ ତ ଥିଲେ ତାହାଙ୍କ ସଙ୍ଗେ ଦେଖା ହେଲେ
ତାହାଙ୍କୁ ସଙ୍ଗେ ଘେନ ସତ୍ୱରେ ଚଞ୍ଜାମରେ ଯାଇ ପ୍ରବେଶ ହୋଇଲେ
ସେ ସାଧୁ ନରେ
ନବାବଠାରେ ଦେଖା ହୋଇ ଏହାଙ୍କ ହକିକତ କହି
ଜ୍ୟେଷ୍ଠକୁମର ଆମ୍ଭେ ଆଉ କନିଷ୍ଠ ସୁତେ ରାଜ୍ୟରେ ହେଲେ ମହାସାଇଁ ହେ

ଷଷ୍ଟି ହଜାର ଟଙ୍କା ଜମାବନ୍ଦି କରିଣ ଆମ୍ଭ ମୂଳେ ତାଲୁକାକୁ ଦିଅ
ବାଇଦା ସରକାରେ (୨) ଲାଲ ଅଲେଖରାମଠାରୁ ରୁପିଆ ବୁଝି ନିଅ
ହେ ସେଗ୍ୱଦନ
ଲାଲକୁ ଅଲେଖରାମକୁ ନବାବ ପୁଚ୍ଛିଲେ ଗିରକୁ
ତା ଶୁଣି ଖରଦୋଧିଲାଲ ଅଲେଖରାମ ଶୀଘ୍ର କଲେ ସୀଉକାରକୁ ଯେ । ୨୫ ।

---

(୧) ତତ୍‌କାଳୀନ ଇଂରେଜ ପ୍ରତିନିଧି; ସେ ଆସିକାରେ ରହି କର ଆଦାୟ କରୁଥିଲେ । (୨) ଇଂରେଜ ପ୍ରତିନିଧି ।

ଲକ୍ଷ୍ମଣ ଭଞ୍ଜଙ୍କର ସାଥେ ଲସ୍କର ଦେଇ ଗୁମୁସରକୁ ପଠାଇଲେ
(୧) ଷୋଳଶ ଅଠାଣୋଇଁ ଶତାବ୍ଦରେ ବିକ୍ରମ ଭଞ୍ଜେ ତାଙ୍କ ସଙ୍ଗେ ଯୁଝିଲେ
ହେ ସାଧୁ ନରେ
କୁଟୁମ୍ବସାକ ଧେନଗଲେ    ଦଶପଲ୍ଲ ନେଇ ରଖିଲେ
ତହିଁ ରଖିନପାରି ଚଳେ ଶୀଘ୍ର ବାନାର ବଉଦରେ ପ୍ରବେଶ ହେଲେ । ୨୬ ।

ମରଦା କୁଦଠାରେ କୁଟୁମ୍ବକୁ ରଖାଇ ନୂଆଗଡ଼ ଶୀଘ୍ର ଆସିଲେ
ଗୁମୁସରକୁ ଆସି ଗ୍ରାମମାନଙ୍କୁ ନାଶି କୁମ୍ପୁନି ସଙ୍ଗତେ ଯୁଝିଲେ
ହେ ସାଧୁ ନରେ
କଢ଼ିଁଠାରେ ଯଶ ନପାଇ    ବାଲସିରା ରତ୍ନଚନ୍ଦ୍ର ସାଇ
ଲକ୍ଷ୍ମଣ ଭଞ୍ଜ ରାଜା କୁମ୍ପୁନି ସଙ୍ଗେ ସେନ ସେଠାରେ ଯୁଝନ୍ତେ ଗୋଡ଼ାଇ । ୨୭ ।

ସେହିଠାରୁ ସତ୍ୱରେ ପଳାଇସାଇ ଖରେ ଦଶପଲ୍ଲ ପ୍ରବେଶ ହେଲେ
ସେଠାରୁ ସେ ବଉଦ (୨) ଦମ୍ପରଦା କୁଦଠାରେ କୁଟୁମ୍ବ ଅଛଇ ଦେଖିଲେ
ହେ ସାଧୁ ନରେ
ଏହିଠାରେ ସପ୍ତମ ଛାନ୍ଦ    ଶେଷ ହେଲା କୋବିଦ ବୃନ୍ଦ
ଶେଷସାୟି ଚରଣ ଧ୍ୟାୟି ତାପ ବାରଣ ହେବାକୁ ସୂର୍ଯ୍ୟମଣି ମୋଦ । ୨୮ ।

---

## ଅଷ୍ଟମ ଛାନ୍ଦ

[ ରାଗ—ମଙ୍ଗଳଗୁଜ୍ଜରୀ ]

ଏଣୁ ଅନ୍ତରେ ଶୁଣ ସୁବୁଦ୍ଧି ସମାଜ
(୩) ମରଦା କୁଦରେ ରହି ବିକ୍ରମ ଭଞ୍ଜ ରାଜ ହେ । ୧ ।

ପାଇ ଭଲ ଲୋକମାନେ ସମସ୍ତେ ତ ଥିଲେ
ତାଙ୍କୁ ବସାଇ ରାଜନ ବିଚାରକୁ କଲେ । ୨ ।

---

(୧) ୧୭୭୭ ଖ୍ରୀଷ୍ଟାବ୍ଦ । (୨) ଏକ ସ୍ଥାନର ନାମ (୩) ତତ୍କାଳୀନ ବୌଦ ରାଜ୍ୟର ଏକ ସ୍ଥାନବିଶେଷ । ଏହା ବୌଦଠାରୁ ଏକ ମାଇଲ ଦୂରରେ ଅବସ୍ଥିତ ।

ଆମ୍ଭ (୧) ଆନା ଲକ୍ଷ୍ମଣ ଭଞ୍ଜ ଏହ୍ୱଠାରୁ ଗଲେ
ଖରସୋଧ୍ୱ ନଲଠାରେ ଆଗ ଦେଖା ହେଲେ ଯେ । ୩ ।

ତାଙ୍କୁ ସଙ୍ଗେ ଘେନଗଲେ ନବାବଙ୍କ ପାଖ
ଅଲେଖରାମ ହୁଁ ମଧ୍ୟେ ହେଲେ ସହାୟକ ଯେ । ୪ ।

ନବାବଙ୍କଠାରେ ଆନା କହ୍ୱଲେ ଯେ ବାକ୍ୟ
ଆମ୍ଭେ ଜ୍ୟେଷ୍ଠ ସୁତ ଥାଉ ଆମ୍ଭର ଜନକ ଯେ । ୫ ।

କନିଷ୍ଠ ବକ୍ରମ ଭଞ୍ଜ ସୁତଙ୍କୁ ରାଜଛ
ଦେଲେ ଆମ୍ଭେ ଭୂମ୍ଭଠାରେ ହେଲୁ ଉପଗତ ଯେ । ୬ ।

ପଞ୍ଚାଶ ହଜାର ଟଙ୍କା (୨) ମାମିଲତ କଲେ
ବାଇଦା ପ୍ରକାରେ ଟଙ୍କା ପ୍ରବେଶ ନ କଲେ ଯେ । ୭ ।

ତାଲୁକା ଲୋକଙ୍କୁ ନିରନ୍ତରେ ଦଣ୍ଡ ଦେଲେ
ଏହ୍ୱ ଘେନି କେତେ ଲୋକ ରାଜ୍ୟ ଛାଡ଼ିଗଲେ ଯେ । ୮ ।

ଷାଠିଏ ହଜାର ଟଙ୍କା ଯେବେ ଆମ୍ଭେ ଦେବୁ
ବାଇଦାକୁ ଅତିକ୍ରମ କେବେ ନ କରବୁ ଯେ । ୯ ।

ଅଲେଖରାମ ଯେ ଲଲ ଜାମିନ ହୋଇବେ
କସ୍ତ ପ୍ରକାରେ ରୁପିଆ ଆଣି ବୁଝାଇବେ ହେ । ୧୦ ।

ଏ ସକାଶରୁ ନବାବ ସୀଉକାର କଲେ
ଲକ୍ଷ୍ମଣ ଭଞ୍ଜଙ୍କୁ ନୃପ କରି ପଠାଇଲେ ହେ । ୧୧ ।

ଆମ୍ଭେ ଯେବେ (୩) ଚେନାପାଟଣାକୁ ବେଗେ ଯିବା
ଲାଟ (୪) ଗୌନରମେଣ୍ଟକୁ ସମସ୍ତ କହ୍ୱବା ହେ । ୧୨ ।

ଏତେ ଘଲ ପାଞ୍ଚ ମନ୍ତ୍ରୀ ସମସ୍ତଙ୍କୁ ଧରି
ମାଳବାଟେ ଶୀଘ୍ର ବାହାରିଲେ ଦଣ୍ଡଧାରୀ ଯେ । ୧୩ ।

ବଡ଼େ ନଗ୍ରରେ ଯାଇଣ ପରବେଶ ହେଲେ
ବଡ଼େ (୫) ବ୍ରମରାଜାଙ୍କଠାରେ ସେ ଦେଖା ହେଲେ ସେ । ୧୪ ।

---

(୧) ବଡ଼ ଘଇ । (୨) ଚୁକ୍ତି । (୩) ମାନ୍ଦ୍ରାଜ । (୪) ଗଭର୍ଣ୍ଣମେଣ୍ଟ ।
(୫) ଇଂରେଜ ପ୍ରତିନିଧି ।

ସ୍ୱାଙ୍କ ହକିକତ ଯାକ କହିଲେ ସମସ୍ତ
ଏ ବାହାରେ ତାଙ୍କ ସଙ୍ଗେ ହୋଇଲେ ସଙ୍ଗାତ ଯେ ।୧୫।

ବିଜେ ରାମରାଜ ତାଙ୍କୁ ସହାୟ ହୋଇଲେ
ସଙ୍ଗେ ନଘନ ଚେନାପାଟଣାକୁ ଶୀଘ୍ର ଗଲେ ଯେ ।୧୬।

ଗୌନରମେଣ୍ଟଙ୍କଠାରେ ସମସ୍ତ ବିଷୟ
ଜଣା କରାଇଲେ ନୃପ ହୋଇଣ ସହାୟ ଯେ ।୧୭।

ଏହାଙ୍କର ଜନକ କୃଷ୍ଣ ଭଞ୍ଜ ରାଜ
ଲକ୍ଷ୍ମଣ ଭଞ୍ଜେ ଅଯୋଗ୍ୟ ବୋଲି କରି ତ୍ୟାଜ ।୧୮।

ଏହାଙ୍କୁ ଗୁମୁସରରେ ରାଜତ୍ୱକୁ ଦେଲେ
ପରମାୟୁ ଶେଷ ହୋନ୍ତେ ପରଲୋକେ ଗଲେ ଯେ ।୧୯।

ତା ଦେଖି ଲକ୍ଷ୍ମଣ ଭଞ୍ଜେ ସହି ନ ପାରିଲେ
ଗୁମୁସରରୁ ସତ୍ୱରେ ପଳାଇ ଆସିଲେ ଯେ ।୨୦।

ଖରସୋଧିଲାଲଠାରେ କହିଲେ ସମସ୍ତ
ଅଲେଖରାମଙ୍କୁ ମଧ୍ୟ କଲେ ଆତ୍ମସାଥ ଯେ ।୨୧।

ପଚାଶ ହଜାର ହୋଇଥିଲା ମାମିଲତ
ଷାଠିଏ ହଜାର ଟଙ୍କା କରି ସେ ଭରିତ ।୨୨।

ଗଞ୍ଜାମ ତରଫ ନବାବଙ୍କଠାରେ କହି
ପିତା ଦତ୍ତ କରିଥିବା ପୃଥ୍ୱୀକି ଛଡ଼ାଇ ଯେ ।୨୩।

ଖରସୋଧିଲାଲ ଯେ ଅଲେଖରାମ ଦୁଇ
ଷଷ୍ଟି ସହସ୍ର ଟଙ୍କାକୁ ଜାମିନ ଯେ ହୋଇ ଯେ ।୨୪।

ଗୁମୁସର ରାଜ୍ୟ ତାଙ୍କୁ ସମର୍ପଣ କଲେ
ଲସକର ଦେଇ ସଙ୍ଗେ ଶୀଘ୍ରେ ବସାଇଲେ ।୨୫।

କୁମ୍ପୁନି ଲସ୍କର ଏ ନୟନେ ଦେଖିଦେଲେ
ଆପଣା ତାଲୁକା ଗୁଡ଼ି ଦଶପଲ୍ଲା ଗଲେ ହେ ।୨୬।

ସେହିଠାରୁ ବଉଦ ମରଦା କୂଦରେ
ଘର କଲେ ବଉଦ ରାଜାଙ୍କ ସହାୟରେ ଯେ ।୨୭।

ସେହିଠାରେ ସମସ୍ତ କୁଟୁମ୍ବ ରଖାଇଲେ
ଭଯ୍ଯ ପାଇ ପୁରରେ ଆସି ଦେଖା ହେଲେ ଯେ । ୨୮ ।

ଯାଙ୍କଠାରେ ଅନୁଗ୍ରହ ହୋଇବଟି ଯେବେ
ପାଞ୍ଚଶ ହଜାର ଟଙ୍କା ଜମାବନ୍ଧ ଦେବେ ହେ । ୨୯ ।

ରୁପିଆ ଦେବାକୁ ଆମ୍ଭେ ଜାମିନ ହୋଇବୁ
ଏହାଙ୍କୁ ସଙ୍ଗେ ଘେନିଣ ଗୁମୁସର ଯିବୁ ଯେ । ୩୦ ।

ତାହା ଶୁଣି ସେ ଲାଟସାହେବ (୧) ସହି କଲେ
ଗୁମୁସର ରାଜତ୍ଵ ତାହାଙ୍କୁ ଲେଖିଦେଲେ ଯେ । ୩୧ ।

ପାଞ୍ଚଶ ହଜାର ଟଙ୍କା କରି ମାମିଲାତ
ଗୁମୁସରକୁ ରାଜାଙ୍କୁ ପେଶିଲେ ତ୍ଵରିତ ଯେ । ୩୨ ।

ବିକ୍ରମ ଭଞ୍ଜ ରାଜନ ସିଲ ହୋଇ ବେଗ
ସେହିଠାରୁ (୨) ବେଙ୍କଟାଚଳକୁ ଗଲେ ଆଗ ଯେ । ୩୩ ।

ସାତ ଦିନରେ ସେଠାରେ ପରବେଶ ହେଲେ
ଲଛମନ ବାଲାଜିଙ୍କି ଦରଶନ କଲେ ଯେ । ୩୪ ।

ନାନା ପ୍ରକାରେ ମଣୋହିଁ ସେହିଠାରେ କରି
ଘରରେ ଗମନ କଲେ ଭଞ୍ଜ ଦଣ୍ଡଧାରୀ ଯେ । ୩୫ ।

ପରବେଶ ହେଲେ ଆସି ସେ ବିଜେ ନଗ୍ରରେ
ବିଜେ ରାମରାଜ ମଧ୍ୟ ଥିଲେ ସଙ୍ଗତରେ ଯେ । ୩୬ ।

ତାଙ୍କଠାରୁ ମେଲାଣି ହୋଇଣ ନରବର
ଗୁମୁସରକୁ ଆସିଲେ ହୃଷ୍ଟ ମାନସର । ୩୭ ।

କେତେ ଦିନେ ଆସି ଆସିକା ପରବେଶ
ଖରସୋଧିଲାଲ ଶୁଣି ଏମନ୍ତ ସନ୍ଦେଶ ହେ । ୩୮ ।

ଆସନମାନ ପକାଇ ସୁଖରେ ବସିଲେ
ବିକ୍ରମ ଭଞ୍ଜ ରାଜନ ଆସିଲେ ଭାଷିଲେ । ୩୯ ।

ତାଙ୍କ ଦ୍ଵାରବାଟେ ସେ ନରବର ଆସିଲେ
(୩) ଅରୁମାନ କରି ତାଙ୍କ ଘରକୁ ନଗଲେ ଯେ । ୪୦ ।

---

(୧) ଦସ୍ତଖତ । (୨) ଦକ୍ଷିଣ-ଭାରତର ସ୍ଥାନବିଶେଷ । (୩) ଅଭିମାନ ।

ଲକ୍ଷ୍ମଣ ଭଞ୍ଜ ରାଜନ ଗୁମୁସରେ ଥିଲେ
ବିକ୍ରମ ଭଞ୍ଜେ ଆସିବାରୁ ସେ ଶୁଣିଲେ ହେ । ୪୧ ।

ଆସିକାକୁ ଆସି ଲାଲଠାରେ ଦେଖା ହୋଇ
ପୂର୍ବରୁ ତ ନୃପ ଗୃହ କରିଥିଲେ ତହିଁ ଯେ । ୪୨ ।

ଲାଲ୍ ଏହା ଦେଖି ତାଙ୍କ ସଙ୍ଗେ କଥା ହୋଇ
ଗଞ୍ଜାମକୁ ଆସିଲେ ମାନସେ କ୍ରୋଧ ବହ୍ନି ଯେ । ୪୩ ।

ଅଲେଖରାମଙ୍କ ସଙ୍ଗେ କଥା ଶୀଘ୍ର ହେଲେ
ଲକ୍ଷ୍ମଣ ଭଞ୍ଜଙ୍କୁ ସଙ୍ଗେ ଘେନ ବାହାରିଲେ ସେ । ୪୪ ।

ନବାବ ସାହେବ ସଙ୍ଗେ ଶୀଘ୍ର ଦେଖା ହୋଇ
ବିକ୍ରମ ଭଞ୍ଜଙ୍କ ନକାଜକ ସବୁ କହି ଯେ । ୪୫ ।

ବିକ୍ରମ ଭଞ୍ଜ ରାଜ ଯେ ଗୁମୁସର ଗଲେ
ଯେତେକ ଲୋକ ତହିଁ (୧) ବ୍ୟବହାର କରୁଥିଲେ ଯେ । ୪୬ ।

ସେମାନଙ୍କୁ ଦଣ୍ଡ ଦେଇ ରାଜ୍ୟରୁ ବାହାର
କରନ୍ତେ ସେ ପର ରାଜ୍ୟେ ସର୍ବେ କଲେ ଘର ଯେ । ୪୭ ।

ଉଗ୍ରଦଣ୍ଡମାନ କେତେ ଲୋକଙ୍କୁ ସେ ଦେଲେ
କୁମ୍ଭୀନ ଘରକୁ ଟଙ୍କା ଗୋଟିଏ ନ ଦେଲେ ସେ । ୪୮ ।

ଲକ୍ଷ୍ମଣ ଭଞ୍ଜ ରାଜ ଏ କଥାମାନ ଜାଣି
ଲାଲ ଅଲେଖରାମଙ୍କ ଆଗେ ଥିଲେ ଭଣି ଯେ । ୪୯ ।

ଏ ଚରିତମାନ ସବୁ ନବାବଙ୍କ ଆଗେ
ଲାଲ ଅଲେଖରାମ ହିଁ ଜଣାଇଲେ ବେଗେ ଯେ । ୫୦ ।

ଲକ୍ଷ୍ମଣ ଭଂଜଙ୍କୁ ଯେବେ ଦେବେ ଗୁମୁସର
ଲକ୍ଷେ ଟଙ୍କା ଜମାବନ୍ଧ ଦେବେ ସେ ନକର ହେ । ୫୧ ।

ଆମ୍ଭେ ଦୁହେଁ ସେ ଟଙ୍କାକୁ ଜାମିନ ହୋଇବୁ
କିସ୍ତି ମାଗି ସେ ରୁପିଆ ପ୍ରବେଶ କରିବୁ ହେ । ୫୨ ।

ନବାବ ସାହେବ ଯହୁଁ ଏମନ୍ତ ଶୁଣିଲେ
ଲାଟ ସାହେବଙ୍କଠାକୁ ସମସ୍ତ ଲେଖିଲେ । ୫୩ ।

---

(୧) ରାଜ୍ୟ ପରିଚାଳନା କରୁଥିଲେ ।

ତାଙ୍କଠାରୁ ଯୌତୁକାର ଅଣାଇ ସତ୍ଵରେ
ଲକ୍ଷ୍ମଣ ଭଞ୍ଜଙ୍କୁ ଗୁମୁସରରେ ନରବର । ୫୪ ।
(୧) ସତରଣ ତିନ ଶକାବ୍ଦରେ ପଠାଇଲେ
ଲକ୍ଷେ ଟଙ୍କା ଜମାବନ୍ଧ ସେଥିଠାରେ କଲେ ଯେ । ୫୫ ।
ପଟେଲମ ପଠାଇଲେ ତାହାଙ୍କ ସଙ୍ଗରେ
ବିକ୍ରମ ଭଞ୍ଜଙ୍କୁ ଉକାଇଲେ ସେ ସତ୍ଵରେ ଯେ । ୫୬ ।
କୁମ୍ପୁନ୍ ଯାଇଣ ତାହାଙ୍କୁ ଶୀଘ୍ରରେ ଆଣିଲେ
ଗଂଜାମରେ ଆଣି ପରବେଶ କରାଇଲେ ଯେ । ୫୭ ।
ପାଟ ମହାଦେବୀ ଆଦି ଭିତର ଲୋକଙ୍କୁ
ଆଠଗଡ଼ ଡୁଙ୍କାପଡ଼ାରେ ରଖିଲେ ତାଙ୍କୁ ଯେ । ୫୮ ।
ବରଷକୁ ଦ୍ଵାଦଶ ସହସ୍ର ମୂଳ କଲେ
ମାସକୁ ସହସ୍ରେ ଟଙ୍କା ଲେଖାରେ ସେ ଦେଲେ ଯେ । ୫୯ ।
କେତେ ଦିନ ଉତ୍ତାରୁ ହୋଇ ଝିଂକଲି ମୁଠାକୁ
ସାତ ସହସ୍ର ଟଙ୍କା ତଳେ ଦେଲେ ତାଙ୍କୁ ଯେ । ୬୦ ।
କାଳୁ ବୋଲି ନାମ ଦେଇ ନହର ତୋଳାଇ
ବିକ୍ରମ ଭଂଜେ କୁଟୁମ୍ବ ଯୋଗ ରହିଁ ରହି ଯେ । ୬୧ ।
ଶେଷଶାୟି ନାରାୟଣ ଚରଣକୁ ଧ୍ୟାନ
କରି ଚମ୍ପାଉ ସୂର୍ଯ୍ୟମଣି ଏ ଛାନ୍ଦ ସମ୍ପୂର୍ଣ୍ଣ ଯେ । ୬୨ ।

---

## ନବମ ଛାନ୍ଦ

(ରାଗ—କାଳ)

ଶୁଣ ସୁଜନ ଦେଇଣ ମନ ଗୁମୁସର ଚରିତ
ଲକ୍ଷ୍ମଣ ଭଂଜେ ଯାଇ ସେଠାକୁ ହୋଇଲେ ସେ ନରପତି । ୧ ।
ଗୁମୁସରରେ ପାସଙ୍କୁ ଆଦି ଯେତେକ ଭଲ ଲୋକ
କେହି ହୋଇଲେ ସେ ରାଜ୍ୟକୁ ଯାଇ କେହି ନ କଲେ ଓକ । ୨ ।

(୧) ୧୭୮୧ ଖ୍ରୀଷ୍ଟାବ୍ଦ ।

ବନ୍ଧମ ଭଂଜଙ୍କର ଆଶାରେ ତ ସମସ୍ତେ ରହିଲେ
କାନ୍ଥୁରେ ଆଠଗଡ଼ରେ ନୃ ଆଗଡ଼ରେ ଘର କଲେ । ୩ ।

ଧବଳକୋଟରେ ଦଶପଲ୍ଲୀରେ ରହିଲେ କେହି କେହି
ଲକ୍ଷ୍ମଣ ଭଂଜେ ଉକାଳବାରୁ ନଗଲେ କେହି ତହିଁ । ୪ ।

ଧୂନ୍ଧ ବୋଲିଣ ଏକ (୧) ଭଣ୍ଡା ଥିଲା ତାହାଙ୍କର ଠାରେ
ତାହାକୁ ଅଶ୍ୱପାଳଙ୍କି ଦେଇ ବସାଇଲେ ପାଖରେ । ୫ ।

ସାଇବ ଦାସ ବୋଲିଣ ଏକ ଦ୍ୱିଜ ଥିଲେ (୨) ଗଙ୍ଗୁରେ
ଥିଲେ ସେ ବସ୍ତ୍ର ବଣିଜମାନ କରନ୍ତି ନିରନ୍ତରେ । ୬ ।

ତାଙ୍କର ଜ୍ୟେଷ୍ଠକୁମର ନାଥ ଦାସ ନାମରେ ଥିଲେ
ସେ ବସ୍ତ୍ର ରଙ୍ଗ ବାଳପଦର ବିମୁଠା ଗୁଣ କଲେ । ୭ ।

ଆଉ ଯେ ମୁଠାମାନଙ୍କୁ ଗୁଣମାନ ନିର୍ଣ୍ଣୟ କରି
ଜଣ ଜଣଙ୍କୁ ଦେଲେ ତ ଲକ୍ଷ୍ମଣ ଭଂଜ ଦଣ୍ଡଧାରୀ । ୮ ।

ଧୂନ୍ଧ ବୋଲିବା ନାମ ତାକୁ ସେ (୩) ମେଦ୍ଧମାରାୟ ପଦ
ଦିଅନ୍ତେ ନିଜ ବସ୍ତ୍ରର କହି ଭୋଗ କଲା ସମ୍ପଦ । ୯ ।

ପୁରୁଷୋତ୍ତମପୁରରୁ ଏକ କରଣ ଜଣେ ଗଲେ
ତାହାଙ୍କୁ ଗୁମୁ ପଟ୍ଟନାୟକ ପଦ ନୃପତି ଦେଲେ । ୧୦ ।

ଧବଳକୋଟରୁ କରଣ ଦୁଇ ଜଣ ମଧ୍ୟ ଆସିଲେ
ସୁମନ୍ତ ପଟ୍ଟନାୟକ ଦଳ କରଣ ତାଙ୍କୁ କଲେ । ୧୧ ।

ସେ ଦୁଇଜଣ ପାଞ୍ଜିଆ ହୋଇ ଲେଖାମାନ ଲେଖିଲେ
ମୁଠାମାନଙ୍କେ କରଣ ଜଣେ ଜଣେ ଲେଖାରେ କଲେ । ୧୨ ।

ପୁଣ ଶ୍ରୀକର ଭଞ୍ଜଙ୍କୁ ଯୁବରାଜ ଶାଢ଼ୀ କି ଦେଲେ
ସେ ପୁଣି ଧୂନ୍ଧ ମେଦ୍ଧମାରାୟ ବିଷୟରେ କହିଲେ । ୧୩ ।

---

(୧) ଭଣ୍ଡାର (୨) ଆଧୁନିକ ଗନ୍ଧଙ୍ଗୁ ଗ୍ରାମ (୩) ଏକ ଉପାଧିବିଶେଷ । ଏହି ମେଦ୍ଧମାରାୟର ଏକ ପଥର ମୂର୍ତ୍ତି ବର୍ତ୍ତମାନ ବରପଲ୍ଲୀ ବାସୁଦେବ ମନ୍ଦିରରେ ରହିଛି । ଏତଦ୍ ବ୍ୟତୀତ ଉକ୍ତ ମନ୍ଦିରରେ କୃଷ୍ଣ ଭଞ୍ଜ ଓ ଲକ୍ଷ୍ମଣ ଭଞ୍ଜଙ୍କର ପଥର ମୂର୍ତ୍ତି ମଧ୍ୟ ରହିଛି ।

ରାଜ୍ୟରେ ଜମିଦାର ସ୍ଥଳରେ ବହୁତ ନନ୍ଦାମାନ
କରୁଅଛନ୍ତି ତାହାଙ୍କୁ ଆଉ ନକର ଏ ବିଧାନ । ୧୪ ।

ଏମନ୍ତ ପ୍ରକାରେ ସେ ବିଷୟରେ କୁମର ଯେ କହିଲେ
ଲକ୍ଷ୍ମଣ ଭଞ୍ଜ ରାଜନ ସେହି କଥାକୁ ନ ଘେନିଲେ । ୧୫ ।

ଏହି ସକାଶୁ ପିତାଙ୍କଠାରୁ ସେହି ଅନ୍ତର ହୋଇ
ଆସିକା ଯାଇ ରହିଲେ କ୍ରୋଧେ ଗୃହକୁ କରି ତହିଁ । ୧୬ ।

ସେହିଠାରୁ ସେ ରାଉତ ଘରୁ କନ୍ୟାଏ ବିଭା ହେଲେ
ଧରାକୋଟରେ ଗୋପୀ ସିଂହଙ୍କ ଭଗିନୀ କହି ଭଲେ । ୧୭ ।

(୧) ବାମନପୁର ମୂଠାରୁ ତାଙ୍କୁ ଲକ୍ଷ୍ମଣ ଭଂଜ ରାଜା
ବାରଶ ଟଙ୍କା ଖର୍ଚ୍ଚକୁ ଦେଲେ ବରସ କରି ମଜ୍ଜା । ୧୮ ।

ବେନି ବରଷ ଉତ୍ତାରୁ ନାଥ ଦାସଙ୍କୁ ପାଶ କଲେ
କୁମ୍ଭୁନ ଜମାବନ୍ଦରୁ ପାଆ ଦାଖଲ କରି ଭଲେ । ୧୯ ।

ଆମ୍ଭଙ୍କୁ ମାସ ଗୋଟିକୁ ଟଙ୍କା ହଜାରେ ଦେଉଥିବ
ଆମ୍ଭର ଯଉଁ ନିମିତ୍ତ ହେବ ଫରମାସ ଚଳିବ । ୨୦ ।

ଏ ରୂପେ କହି ହଜାରେ ଟଙ୍କା ମାସକୁ ମାସ ନେଲେ
ଭିତର କଥା ଗୃହ ଲୋକଙ୍କୁ ବର୍ତ୍ତନମାନ ଦେଲେ । ୨୧ ।

---

(୧) ଆଧୁନିକ ନାମ 'ବାବନପୁର' । ଏହା ଆସିକା ସହରଠାରୁ ଦୁଇ ମାଇଲ ଦୂରରେ ଅବସ୍ଥିତ । ଏଠାରେ ଭଞ୍ଜବଂଶର କୀର୍ତ୍ତି ସ୍ୱରୂପ ଏକ ମନ୍ଦିର ରହିଛି । ମହାରାଜା ଶ୍ରୀ କୃଷ୍ଣଭଂଜଙ୍କ ସମୟରେ ଉକ୍ତ ମନ୍ଦିରର କାର୍ଯ୍ୟ ପ୍ରାରମ୍ଭ ହୋଇ ଲକ୍ଷ୍ମଣ ଭଂଜ ଓ ଶ୍ରୀକର ଭଂଜଙ୍କ ରାଜୁତି ସମୟରେ ମଧ୍ୟ ପୂର୍ଣ୍ଣ ନ ହୋଇ ଅପୂର୍ଣ୍ଣ ରହିଥିଲା । ମାତ୍ର ବର୍ତ୍ତମାନ ମହନ୍ତ ମହାରାଜ ଶ୍ରୀ ଶ୍ରୀ ବଂଶୀଧର ଆଗ୍ରହ୍ୟ ଓ ଗ୍ରାମବାସୀ ତଥା ଗୁମୁସରର ବିଶିଷ୍ଟ ବଦାନ୍ୟ ବ୍ୟକ୍ତିମାନଙ୍କ ସହଯୋଗରେ ମନ୍ଦିରଟି ପୂର୍ଣ୍ଣାଙ୍ଗ ହୋଇପାରିଛି । ମନ୍ଦିରଟି କେବଳ ଇଟାରେ ନିର୍ମିତ । ଏଠାରେ ବାସୁଦେବ ପୂଜା ପାଉଛନ୍ତି ।

ବଳବା ଟଙ୍କା ରଖିଣ ଏକ ଦେଉଳ ନିର୍ମା କଲେ
ପ୍ରତିଷ୍ଠା କରି (୧) ଶ୍ରୀ ବାସୁଦେବଙ୍କୁ ବିଜେ କରାଇଲେ । ୨୨ ।

ତାଙ୍କ ଉତ୍ତର ପଟରେ ଏକ ଦେଉଳ ନିର୍ମା କରି
କପିଳେଶ୍ୱର ନାମରେ ଲିଙ୍ଗ ଥାପିଲେ ଦଣ୍ଡଧାରୀ । ୨୩ ।

ବିଜେ ଲକ୍ଷ୍ମଣଶରଣପୁର ନାମେ ଶାସନ କଲେ
ପ୍ରତାପ ଲକ୍ଷ୍ମଣପୁର ନାମେ ଶାସନ ବସାଇଲେ । ୨୪ ।

ବୀର ଲକ୍ଷ୍ମଣପୁର ଆବର ଶ୍ରୀ ବାସୁଦେବପୁର
ନିର୍ବାହ କରାଇଲେ ଏ ରୂପେ ଶାସନ ନୃପବର । ୨୫ ।

ବେବର୍ତ୍ତା ଯାଇ ଲାଲଙ୍କୁ କହି ତାହାଙ୍କ ସୀଙ୍ଗିକାରେ
ଯାବତ ଅଧିକାରମାନଙ୍କୁ କଲେ ସେ ଗୁମୁସରେ । ୨୬ ।

ମାସକୁ ଏକ ହଜାର ଟଙ୍କା ତାହାଙ୍କୁ ଲେଖିଦେଲେ
କୁମ୍ଭୀନ କିସ୍ତି ପ୍ରକାରେ ଟଙ୍କା ଦାଖଲ ସେହୁ କଲେ । ୨୭ ।

ତାଙ୍କର ଗ୍ରାମେ ବଂଶୀ ମହାନ୍ତି ନାମେ କରଣ ଥିଲେ
ତାହାଙ୍କ ପୁତ୍ର ଚୈତନ୍ୟଙ୍କୁ ଖାନସମା ପଦ ଦେଲେ । ୨୮ ।

ଏହି ରୂପେ ସେ ବେନି ଜନ ଯେ ବୁଲି ରାଜ୍ୟ ଯାକରେ
ନ୍ୟାୟ ଅନ୍ୟାୟେ ରୁପିଆ ଜମାକଲେ ସେ ଜାଣ ନରେ । ୨୯ ।

ଯୋରଡ଼ା ରାଜା କୁଞ୍ଜ ସିଂହଙ୍କ ଝିଅକୁ ବିଭା ହେଲେ
ତାହାଙ୍କୁ ଘେନି ଦୁ' ତିନି ମାସ ସୁଖିତରେ ରହିଲେ । ୩୦ ।

(୨) ସତରଶତଦଶ ଶକାବ୍ଦ ପର୍ଯ୍ୟନ୍ତରେ ରାଜତ୍ୱ
କରନ୍ତେ ସୁଖି ହେଲେ ପରଜା ମୁସ୍ତାଜର ସମସ୍ତ । ୩୧ ।

---

(୧) ପୁରୁଣା ଗୁମୁସର ତଥା ବରପଲ୍ଲୀ ଗଡ଼ରେ ବର୍ତ୍ତମାନ ଶ୍ରୀ ବାସୁଦେବ ମନ୍ଦିର ରହିଛି । ଏଠାରେ ବାସୁଦେବ ଭଗ୍ନ ଅବସ୍ଥାରେ ପୂଜା ପାଉଛନ୍ତି । କିମ୍ବଦନ୍ତୀ କହେ ଯେ କୌଣସି ଏକ ଯବନ ଆକ୍ରମଣରୁ ମୂର୍ତ୍ତିଟିର ହସ୍ତଟି ଭାଙ୍ଗି ଯାଇଛି । ଏହି ମୂର୍ତ୍ତି ନିକଟରେ ଥିବା 'କୁମାରସୁଇଁ' ପର୍ବତରୁ ଆଣିତ । ମନ୍ଦିରରେ କୃଷ୍ଣ ଭଞ୍ଜ, ଲକ୍ଷ୍ମଣ ଭଂଜଙ୍କର ପଥର ମୂର୍ତ୍ତି ସହ ପଥର ଖୋଦିତ ଏକ ଲେଖ ରହିଛି । (୨) ୧୭୮୮ ଖ୍ରୀଷ୍ଟାବ୍ଦ ।

ଜୟମଙ୍ଗଳ ଭଞ୍ଜଙ୍କ ସୁତ ଯେ (୧) ରଘୁନାଥ ଭଞ୍ଜ
ତାଙ୍କୁ ବହୁତ ସୁଖକୁ ଦେଇ ରଖିଥିଲେ ଯେ ରାଜ୍ୟେ ।୩୨।

ଏହି ଶକାବ୍ଦେ କାଳକୁ ଦଳି ନପାରି ଦଣ୍ଡଧାରୀ
ମନୁଷ୍ୟ ଜନ୍ମ ଧର୍ମକୁ ଲଙ୍ଘିଗଲେ ସେ ସ୍ୱର୍ଗପୁରୀ ।୩୩।

ମେଦମାରାୟ ବେବର୍ତ୍ତାଠାକୁ ଅତି ଶୀଘ୍ର ଆସିଲା
ରାଜା ଏମନ୍ତ ଆଜ୍ଞାକୁ କରିଅନନ୍ତ ସେ କହିଲା ।୩୪।

ବେବର୍ତ୍ତାଠାକୁ ଯାଇ ଆମ୍ଭର ଆଜ୍ଞା ବୋଲି କହିବ
ରଘୁନାଥ ଭଞ୍ଜଙ୍କୁ ଗୁମୁସରରେ ରାଜା କରିବ ।୩୫।

ତାହା ଶୁଣିଣ ନାଥ ବେବର୍ତ୍ତା ସ୍ୱୀକାରକୁ କଲେ
ରଥ ହୁଅନ୍ତେ ପାଲିଙ୍କି ବସି ଆସିକା ଶୀଘ୍ରେ ଗଲେ ।୩୬।

ଶ୍ରୀକର ଭଞ୍ଜଙ୍କରେ ସଙ୍ଗରେ ସମସ୍ତ କଥା ହେଲେ
ତାହାଙ୍କୁ ସଙ୍ଗେ ଘେନି ଗୁମୁସରକୁ ସେ ଆସିଲେ ।୩୭।

କାହାଳ ଶୁଭିବାରୁ ଶ୍ରବଣେ ମେଦମାରାୟ ଲୋକେ
ଏ କି ବୋଲିଣ ଭୟକୁ ପାଇ ବିସ୍ମିର କଲେ ଥୋକେ ।୩୮।

ଶ୍ରୀକର ଭଞ୍ଜେ ଆସିଲେ ବୋଲି ଜନମୁଖୁ ଶୁଣିଲେ
ସଭୟ ହୋଇ ଗୁମୁରେ ତାଙ୍କୁ ସମସ୍ତେ ଦେଖା ହେଲେ ।୩୯।

ରାଜାମାନଙ୍କ କୁଳରେ ପରଲୋକ ଧର୍ମ ଯେମନ୍ତ
ସେହି ରୂପରେ ଶ୍ରୀକର ଭଞ୍ଜ ରାଜା କଲେ ତେମନ୍ତ ।୪୦।

ଭୟକୁ ପାଇ ସେ ମେଦମାରା ଦେଖା ଆସି ନୁହନ୍ତେ
ଲୋକ ପଠାଇ ତାକୁ ଧରାଇ ଅଣାଇଲେ ଭରତେ ।୪୧।

ଦଣ୍ଡକୁ ବନ୍ଧି ସାଙ୍କୋଳି ଦେଇ ବନ୍ଦୀ କରି ରଖିଲେ
ତାହାର ଯେତେ ପଦାର୍ଥ ଥିଲା ତା ସବୁ ବନ୍ଧି ନେଲେ ।୪୨।

---

(୧) ରଘୁନାଥ ଭଂଜ ଆଠରାଜା ଜୟମଙ୍ଗଳ ଭଂଜଙ୍କ ପୁଅ । ମେଦମାରାୟ ଲକ୍ଷ୍ମଣ ଭଂଜଙ୍କ ଶାସନରେ ଏକ ପ୍ରଭାବଶାଳୀ ବ୍ୟକ୍ତି ଥିଲେ । ଏଥିପାଇଁ ଶ୍ରୀକର ଭଂଜ ଖୁବ୍ ଆପତ୍ତି କରିଥିଲେ । ସୁତରାଂ ଲକ୍ଷ୍ମଣ ଭଂଜଙ୍କ ମୃତ୍ୟୁ ପରେ ମେଦମାରାୟ ଶ୍ରୀକର ଭଂଜ ପରିବର୍ତ୍ତେ ରଘୁନାଥ ଭଂଜଙ୍କୁ ରାଜା କରିବା ପାଇଁ ଚକ୍ରାନ୍ତ କରିଥିବାର ଗୁମୁସର ଇତିହାସରୁ ଜଣାଯାଏ ।

ନାଥ ବେବର୍ତ୍ତୀ ଦ୍ୱିଜଙ୍କୁ ରାଜଗୁରୁ ପଦକୁ ଦେଲେ
ଖାନସମାଙ୍କୁ ଚମ୍ପାଉ ପଟ୍ଟନାୟକ କହି ବୋଇଲେ ।୪୩।

ଏହି ରୂପରେ ସେ ବେନି ଜନ ରାଜ୍ୟରେ ଅଧିକାର
କଲେ ଶ୍ରୀକର ଭଞ୍ଜ ନୃପତି ରହିଲେ ନହରର ।୪୪।

(୧) ସପ୍ତଦଶଶତ ଏକାଦଶ ଶକାବ୍ଦେ ଜାଣ
ଶ୍ରୀକର ଭଞ୍ଜ ରାଜନ ଗୁମୁସରେ ହୋଇଲେ ରାଣ ।୪୫।

କରି ତାରଣ ଚରଣ ଆଶ୍ରା କରି ଦ୍ୟୁମଣିମଣି
ଶଆଉ କହେ ମୋହର ନରେ ଅଛୁ କେ ଆଉ ପୁଣି ।୪୬।

---

## ଦଶମ ଛାନ୍ଦ

[ ରାଗ—ଖେମଟା ଏକତାଳ ]

ଏଥୁଅନ୍ତେ ମନ ଦେଇ ଶୁଣ ଜନ ଶ୍ରୀକର ଭଞ୍ଜ ରାଜନ
କରନ୍ତେ ବିଷୟ ବ୍ୟବହର୍ତ୍ତା ରାଜଗୁରୁଠାରେ ନିୟୋଜନ
ସମସ୍ତ ଅଧିକାର
କରି ଭୋଗ କଲି ନିରନ୍ତର ।୧।

ମାସକୁ ଛ ହଜାରେ ଲେଖାରେ ରୁପିଆ ରାଜାଙ୍କ ଗ୍ରୁମୁରେ ଦେଲି
ନିମିତ୍ତମାନଙ୍କେ ଯାହା ଫରମାସ କରେ ତାହା ସମର୍ପିଲି
ଆଉ କେତେ ବିଷୟ
କଲି ନିରତେ ହୋଇ ନିର୍ଭୟ ।୨।

ରାଜଗୁରୁ ପଦ ପାଆନ୍ତେ ସେ ବ୍ରାହ୍ମଣଙ୍କଠାରେ ଦ୍ୱେଷ କଲି
ତାଙ୍କୁ ସାନ ହେବା ବ୍ରାହ୍ମଣମାନଙ୍କୁ ନମସ୍କାର କରାଇଲି
ବୟୋଽଧିକ ଲୋକଙ୍କୁ
ଆପେ କଲି ସେ ନମସ୍କାରକୁ ।୩।

---

(୧) ୧୭୧୧ ଶକାବ୍ଦ = ୧୭୮୯ ଖ୍ରୀଷ୍ଟାବ୍ଦ ।

ଶ୍ରୀକର ଭଞ୍ଜ ରାଜନ ପୁଣି ବେବର୍ତ୍ତାଙ୍କୁ କଲେ ନମସ୍କାର
ପୁରୁଷୋତ୍ତମପୁରଆ ଦ୍ଵିଜ ହୋଇ ଭ୍ରାନୁଆ ପ୍ରାୟେ ପ୍ରକାର
କରି ସୁଖରେ ଧନ
ନେଲା ଯେମନ୍ତ ରୁପେ ରାଜନ । ୪ ।

ନ୍ୟାୟ ଅନ୍ୟାୟରେ ଯାବନ୍ତ ପଦାର୍ଥ ଦେଶରୁ ସାଧନ କଲା
କୁମ୍ଭୁନ ଘରକୁ କେତେ ଦେଇ କେତେ ଆପଣା ଘରେ ରଖିଲା
ଭଞ୍ଜ ରାଜା ଶୁଣିଲେ
ମାନସରେ ତାଙ୍କୁ ଦୋଷ ହେଲେ । ୫ ।

ମହା ମହାବାରୁଣ ଯୋଗ ପଡ଼ନ୍ତେ ଗଙ୍ଗା ସ୍ନାନକୁ ରାଜନ
ଯାଇ ସ୍ନାନ ଦାନ ବ୍ରାହ୍ମଣ ଭୋଜନ କରାଇଲେ ଧୃତଧନ
ଧୂଆଁ ହୁଇ ଗ୍ରାମକୁ
ସଙ୍କଳ୍ପ କଲେ ଦେବା ବିପ୍ରଙ୍କୁ । ୬ ।

ସେଠାରୁ ବାହୁଡ଼ି ରାଜ୍ୟରେ ଆସିଣ ନୃପବର ବେଶ ହେଲେ
ବେବର୍ତ୍ତା ଅମାର୍ଗ ଧନୁ ଧନୁ ବୃଦ୍ଧି ହେବା ନିତ୍ୟ ସେ ଦେଖିଲେ
କ୍ରୋଧ ହୋଇ ନୃପତି
ତାଙ୍କୁ ବଚନକୁ ନ କହନ୍ତି । ୭ ।

କୁଲାଡ଼ରେ ରତ୍ନେଶ୍ୱର ମଣ୍ଡପ ନୃପତି ତ ନିର୍ମ୍ମ କଲେ
ଧନଞ୍ଜୟପୁର ବେନ ମଣ୍ଡପକୁ ନିର୍ବାହ କଲେଟି ଭଲେ
ଏହୁ ବାଲୁଙ୍କେଶ୍ୱର
ବେନ ହନୁମାନ ହିଁ ଆବର । ୮ ।

ରାଇପଡ଼ାରେ ବାଲୁଙ୍କେଶ୍ୱରଙ୍କର ନିମିତ୍ତେ ଏକ ମଣ୍ଡପ
ପାଇଲପଡ଼ାରେ ଦଧିବାମନଙ୍କ ନିମନ୍ତେ କଲେ ମଣ୍ଡପ
ବାଲିପଦରରେ ପୁଣ
ଏକ ମଣ୍ଡପ କଲେ ନିର୍ମାଣ । ୯ ।

ବେବର୍ତ୍ତା କରନ୍ତା ଅନ୍ୟାୟ ଶୁଣନ୍ତେ ବିଗିଡ଼ିଲେ ନୃପବର
ଦ୍ଵିଜ ହୋଇ ଆମ୍ଭ ରାଜ୍ୟରୁ ରୁପିଆ ସାଧି ରଖିଲା ତା ଘର

ଆଜ ଦିନ ଯାଏକ
ଲକ୍ଷେ ଟଙ୍କା ହୋଇଅଛି ବାକ । ୧୦ ।

ଘାଟ ପଠାଇ ନବାବ ଦେବର୍ତ୍ତାଙ୍କୁ ଗଞ୍ଜାମକୁ ଘେନିଗଲେ
ଦେବର୍ତ୍ତାଙ୍କୁ ଟଙ୍କା ଦିଅ ବୋଲିକରି ଘାଟ ଦେଇ ରଖାଇଲେ
ପୁଣି ଘାଟ ଆସିଣ
ଚଆଉକୁ ଏଥୁ ନେଲେ ପୁଣ । ୧୧ ।

ରାଜା ପାଖେ ଥିବା ବାଉଲ ଲୋକଙ୍କୁ ବସାଇ ମନ୍ତ୍ର କଲେ
ମୁଠା କାର୍ଯ୍ୟୀ କରଣମାନଙ୍କୁ ଡାକ ବିଗ୍ରହକୁ ପଗ୍ରହିଲେ
ନିଜ ରାଜ୍ୟରୁ ଟଙ୍କା
ସାଧନ କଲା ନକର ଶଙ୍କା । ୧୨ ।

କୁମ୍ଭକ ଘରକୁ କେତେ ଦେଇ କେତେ ଆମଣା ଘରେ ରଖିଲା
ଆଜ ଯାଏକ କୁମ୍ଭକ ଘର ବାକ ଲକ୍ଷେ ଟଙ୍କା ଯାଉଛି ହେଲା
ଆମ୍ଭେ ଟଙ୍କା ଦେବାକୁ
ରୁଜୁ ହେବା ଯାଇ ନବାବଙ୍କୁ । ୧୩ ।

ତାଙ୍କ କାର୍ଯ୍ୟୀ ଭଲ ଲୋକେ କରଣେ ସର୍ବେ ସନମତ କଲେ
ସେହି ସମୟରେ ନବାବଙ୍କଠାରୁ ପାଇକ ବେନି ଆସିଲେ
ଫରମାନା ରାଜାଙ୍କୁ
ଦେଲେ ଗଂଜାମକୁ ଆହିବାକୁ । ୧୪ ।

ଭଲ ଲୋକଙ୍କୁ ସଙ୍ଗେ ଘେନି ରାଜନ ଗଞ୍ଜାମକୁ ବାହାରିଲେ
ଆଠ ବରଷରେ ଦେବର୍ତ୍ତାଙ୍କ ମୂଳେ ଯେତେ ଟଙ୍କା ଦେଇଥିଲେ
ନୃପ ସେ ଲେଖା ଘେନି
ମାନସରେ ହୋଇ ଅଭିମାନୀ । ୧୫ ।

କାର୍ଯ୍ୟୀ କରଣମାନେ ଲେଖି ସେ ଲେଖା ନୃପଙ୍କ ସମ୍ମୁଖରେ ଦେଲେ
ପୁରୁଷୋତ୍ତମପୁରଠାକୁ ନବାବ ଆଗ ଆସି ରହିଥିଲେ
ଦେଖା ସେହି ସ୍ଥାନରେ
ନୃପତି ହେଲେ ଅତି ଶୀଘ୍ରରେ । ୧୬ ।

ପିତାପୁତ୍ରଙ୍କର ଷଠଦଶ ବର୍ଷେ ଦ୍ୱି' ଲକ୍ଷ ରୁପିଆ ଜମା
ଦେଶରୁ ସାଧନ ହେବା ଲେଖା ଶୁଣି ନୃପ ହୋଇ ହୃଷ୍ଟମନା
ନବାବଙ୍କୁ କହିଲେ
ବେବର୍ତ୍ତାଙ୍କୁ ଲେଖା ରୁଜ କଲେ । ୭ ।

ବାକି ଠଙ୍କା ଦିଅ ବୋଲି ବେବର୍ତ୍ତାଙ୍କୁ ଗଞ୍ଜାମେ ନେଇ ରଖିଲେ
ରାଜାଙ୍କ ମୂଳେ ତାଲୁକା ସମର୍ପିଣ ରାଜ୍ୟକୁ ସେ ପଠାଇଲେ
ଦୈବେ ସେ ସମ୍ବତ୍ସର
ଠଙ୍କାକୁ ଧାନ ଛ' କୋଡ଼ି ଦର । ୧୮ ।

ଦିଆନ ପଟ୍ଟନାୟକ ଚଇତନ ଚ୍ୟାଉକୁ ରାଜ୍ୟରେ ଥାଇ
କରନ୍ତେ ତାଲୁକା ବୁଲି କରି ଠଙ୍କା ସାଧିଲେ ସେ କେତେ ମାତ୍ର
ଗଞ୍ଜାମକୁ ପେଶିଲେ
କିସ୍ତି ଗୋଟିକୁ ପୂର୍ଣ୍ଣ ନୋହିଲେ । ୧୯ ।

ପୁଣିହିଁ ଠଙ୍କାକୁ ସେ ସମୟେ ହେଲା ଅଢ଼ାଇ ଭରଣ ଧାନ
ଏ ସକାଶୁ କିସ୍ତି ପ୍ରକାରେ ଦେଶରୁ ନୋହିଲା ଠଙ୍କା ସାଧନ
ନବାବଙ୍କଠାରୁ କେତେ
ଲୋକ ଆସିଲେ ଠଙ୍କା ନିମିତ୍ତେ । ୨· ।

ସେ ଉତ୍ତାରୁ ପଞ୍ଚାଶ ଜଣ ପାଇକ ଘେନି ବାଇନା ପଣ୍ଡିତ
ଗୁମୁସର ଗଡ଼େ ପରବେଶ ହୋଇ ନହର ଦ୍ୱାରେ ଉଭାରିତ
ବୋଲେ ରାଜାଙ୍କୁ ଡାକି
ଠଙ୍କା ଦିଅ ଯେତେ ଅଛି ବାକି । ୨୧ ।

ରାଜା ଯେତେ ରୂପେ କହିଲେ ହେଁ ତାହା ସେହି କିଛି ନ ଘେନିଲା
ବେବାକରେ ଠଙ୍କା ଦେଲେ ଲୋକ ଧରି ଯିବା ନାହିଁ ଯିବି ବୋଇଲା
ନୃପ ଏ ବାକ୍ୟ ଶୁଣି
କି କରିବା କଲେ ଏ ଭାଳେଣି । ୨୨ ।

ନସନ୍ଧି ରାତିରେ ମହାଦେବୀ ଆଦିଙ୍କି ଭିତର ଲୋକମାନଙ୍କୁ
ନହର ଛାଡ଼ି ବାହାରିଗଲେ ଶୀଘ୍ରେ ସେ ରାତିରେ ବାରୁଡ଼ାକୁ

ଦଣ୍ଡେ ରହି ସେଠାରେ
ପରବେଶ ହେଲେ ବଦାଙ୍ଗରେ ୨୩ ।

ନବାବ ହଜୁରକୁ ଅର୍ଜି ଲେଖିଲେ ଦଇବ ବଟରୁ ଠଙ୍କା
ରାଜ୍ୟରୁ ଗୋଟିଏ ସାଧନ ନୋହିଲା କରନ୍ତେ ଆମ୍ଭେ ଏ ଶଙ୍କା
ବାଇନ ଘଣ୍ଟିଟିଙ୍କୁ
ପେଶିଲ ତ କ୍ରୋଧେ ଆମ୍ଭଟୋକୁ । ୨୪ ।

ପଞ୍ଚାଶ ପାଇକ ସଙ୍ଗତରେ ଯେନ ଆମ୍ଭ ଦୁଆରେ ବସିଲା
ପାଣି (୧) ଅଗେଇରା (୨) ସାମାନମାନଙ୍କୁ ଭିତରକୁ ନ ଛାଡ଼ିଲା
ଆମ୍ଭେ ଦେଖି ଏ ମାର୍ଗ
ନହରକୁ କରି ପରିତ୍ୟାଗ । ୨୫ ।

ଗାଲେଖି ମୁଠାର ବଦାଙ୍ଗି ଗ୍ରାମରେ କୁଟୁମ୍ବ ଯେନ ରହିଲୁ
ଆମ୍ଭଙ୍କୁ ରକ୍ଷା କରିବା କର୍ତ୍ତା ତୁମ୍ଭେ ଏ ଯେନ ଅର୍ଜି ଲେଖିଲୁ
ଆସିବାର ଖବରେ
ଠଙ୍କା ପ୍ରବେଶ କରିବୁ ଖରେ । ୨୬ ।

ଦିଆନ ପଟ୍ଟନାୟକ ଚଇତନ ଚାଆଉ ବୁଲି ରାଜ୍ୟରେ
ସାଧନ କଲେ ଯେତେ ଠଙ୍କା ସେ ସରିଗଲା ରାଜାଙ୍କ (୩) ବସୂରେ
ତୀର୍ଥ କରି ଯିବାକୁ
ନୃପ ମାନସ ହେଲା ଭୂରକୁ । ୨୭ ।

ପୁତ୍ର ଧନଞ୍ଜୟ ଭଞ୍ଜଙ୍କୁ ଯେ (୪) ଚତୁର୍ଦ୍ଦଶ ବର୍ଷ ହୋଇଥିଲା
ରାଜଛତ୍ର ଶାଢ଼ୀ ପୁଅକୁ ଦେବା ବୋଲି ଚିତ୍ତରେ ପ୍ରବେଶ ହେଲା
ଅନ୍ତ ଭିତ୍ର ହୋଇଲେ
ପାସ ଭଲ ଲୋକଙ୍କୁ ଡାକିଲେ । ୨୮ ।

ଦେଶରୁ କାର୍ଯ୍ୟୀ କରଣ ପଧାନଙ୍କୁ ଡାକି ସମର୍ପି କହିଲେ
ପୁଅଙ୍କୁ ରାଜଛତ୍ର ଶାଢ଼ୀ ଦେଇ ଭାଇ ପୁଅଙ୍କ ପାଖେ ବସିଲେ

(୧) ଅଗେରା । (୨) ଜିନଷପତ୍ର । (୩) ବ୍ୟୟ, ଖର୍ଚ୍ଚ । (୪) ଚଉଦ ବର୍ଷ ।

ଏ ରୂପେ କେତେ ମାସ
ଯାନ୍ତେ ଭଗ୍ନ ହୋଇ ନରଈଶ । ୨୯ ।

କାହାକୁ ନକହି ବୃନ୍ଦାବନ ଯିବା ବୋଲି ଶୀଘ୍ରେ ବାହାରିଲେ
ମୁକୁନ୍ଦ ପଟ୍ଟଣିଆ ଆଦି ନମନ୍ତ୍ରୀୟେ ସଙ୍ଗତରେ ମଧ ଗଲେ
ନୃପ ଶୁଣି ପଛରେ
ଗୋଡ଼ାଇଲେ ଆଣିବା ଇଚ୍ଛାରେ । ୩୦ ।

କାହାକୁ ଦେଖା ନଦେଇ ଯେ ବଉଦ ସମ୍ବଲପୁର ମାର୍ଗରେ
ଶୀଘ୍ରରେ ଗମନ କଲେ ସେ ଭଞ୍ଜରୁ କେନ୍ଦୁଝର ଗଲେ ଥରେ
ବୃନ୍ଦାବନ (୧) ବାହାରେ
ନୃପ ଗମନ କଲେ ସଭରେ । ୩୧ ।

(୨) ସତରଶ ଏକବଂଶ ଶକାବ୍ଦରେ ଶ୍ରୀକର ଭଞ୍ଜ ରାଜନ
ଗୁମୁସର ଛାଡ଼ି ବୃନ୍ଦାବନ ଗଲେ ହୋଇ ଅତି ହୃଷ୍ଟମନ
ବୃନ୍ଦାବନେ ପ୍ରବେଶ
ହେଲେ ଭଞ୍ଜ ବଂଶ ଅବତଂସ । ୩୨ ।

ଧନଞ୍ଜୟ ଭଞ୍ଜେ ନୃପତି ହୁଅନ୍ତେ ଚୈତନ୍ୟ ଚ୍ୟାଉଙ୍କୁ କହି
ସ୍ୱଦେଶକୁ ଘେର ପଠାଇ ଧନୀଙ୍କ ଘରୁ ଧନ ଆଣ ଯାଇ
ନହରରେ ରଖିଲେ
ଚୋଟୋଙ୍କାରେ ସେ ପ୍ରବର୍ତ୍ତିଲେ । ୩୩ ।

ନାଛନା ଜମାଦାର ଯେ ଭଗବାନ ସିଂହ ବେହ ଜମିଦାର
ପଟାଲିମ ମଧୁ ପଳଇ ଆସିଲେ ବେହ କୁମ୍ଭନ ସଙ୍ଗର
ସେ ସିଂହ ଡମ୍ବରୁ ଧ୍ୱନ
ଆସି ସେଠି ହୋଇଣ ଅଭିମାନ । ୩୪ ।

ଧନଞ୍ଜୟ ଭଞ୍ଜ ରାଜାଙ୍କ ଛାମୁରେ ଆସିକରି ଦେଖା ହେଲେ
ନୃପଙ୍କଠାରୁ ସମ୍ଭାବନା ପାଇଣ ନିଶ୍ଚିନ୍ତ ହୋଇ ରହିଲେ

(୧) ରାସ୍ତା । (୨) ୧୭୨୧ ଶକାବ୍ଦ = ୧୭୯୯ ଖ୍ରୀଷ୍ଟାବ୍ଦ ।

ପାଇ ନୃପ ଆଦେଶ
ସିପାହି କଲେ ଯେ ଯେ ଜନଶ । ୩୫ ।

(୧) ଇଙ୍ଗାରୁଜ ନଳ ଡ଼ାବାକୁ ଧରାଇ ସିପାହିଙ୍କ ବେଶ କଲେ
ପ୍ରାତଃ କାଳେ ସାୟଂ କାଳରେ ସଧାଇ ଯୁଦ୍ଧାଦିକ ଶିକ୍ଷା କଲେ
ଏହି ରୂପେ ବର୍ଷକୁ
ପୁଆଇଲେ ହୋଇ ହରଷକୁ । ୩୬ ।

ରାମଚନ୍ଦ୍ର ପରମଗୁରୁ ଦ୍ଵିଜଙ୍କୁ ରାଜଗୁରୁ ପଦ ଦେଲେ
ବ୍ରାହ୍ମଣମାନଙ୍କ ଉପରେ ସେ ବଡ଼ ଅଧିକାରମାନ କଲେ
ଚୈତନ୍ୟ ଚ୍ୟାଉଠାରେ
ତାଙ୍କ ଦ୍ଵେଷ ଥାଏ ନିରନ୍ତରେ । ୩୭ ।

ବହୁତ ପଦାର୍ଥ ବ୍ୟୟ କଲେ ବୋଲି ରାଜାଙ୍କୁ ନିତି କହିଲେ
ପଞ୍ଚାଶ ହଜାର ଟଙ୍କା ତାହା ଘରେ ଅଛି ଯେବେ ତୁମ୍ଭେ ଭଲେ
ନୃପ ଏ କଥା ଶୁଣି
ତାଙ୍କୁ ବନ୍ଦୀ କଲେ ସେହିକ୍ଷଣି । ୩୮ ।

ଦିଆନ ପଟ୍ଟନାୟକ ରାଜଗୁରୁ ଦୁହେଁ ବ୍ୟବହାର କଲେ
ଚୈତନ୍ୟ ଚ୍ୟାଉଙ୍କୁ ଟଙ୍କା ଦିଅ ବୋଲି ସାଙ୍କୋଳି ଦେଇ ରଖିଲେ
ଶ୍ରୀକର ଭଞ୍ଜ ଈଶ
ତୀର୍ଥ କରନ୍ତେ ପୂର୍ଣ୍ଣ ବରଷ । ୩୯ ।

କାଶୀ ପ୍ରୟାଗ ଅଯୋଧ୍ୟା ବୃନ୍ଦାବନ ଆଦି ତୀର୍ଥଯାତ୍ରା କଲେ
ତ୍ରୟୋଦଶ ମାସ ପୂର୍ଣ୍ଣ ହୋନ୍ତେ ନରସିଂହପୁରେ ଆସି ହେଲେ
ପୁଅଙ୍କଠାକୁ ଲେଖ
ଲେଖିଲେ ସେ ନରପଣ ଶିଖ । ୪୦ ।

ଚୈତନ୍ୟ ଚ୍ୟାଉଙ୍କୁ ଅତି ଶୀଘ୍ରେ ପଠିଆଇ ଦେବ ଆମ୍ଭଠାକୁ
ତା ସଙ୍ଗେ କଥା ହୋଇ ତା ଉତ୍ତରୁ ବା ଯିବୁ ଆମ୍ଭେ ତାଲୁକାକୁ
ଏହି ରୂପେ ପତ୍ରିକା
ଆସିବାରୁ ନୃପ ବନ୍ଧ ଦକା । ୪୧ ।

---

(୧) ଇଂରେଜ ।

ଚୈତନ୍ୟ ଚ୍ୟାଉକୁ ବନ୍ଦୀରୁ ଫିଟାଇ ତାହାକୁ ବହୁତ କହି
ଶ୍ରୀ ଜଗନ୍ନାଥ ଆଗୃଷ ଗୋହାଇଁଙ୍କି ତାହା ସଙ୍ଗେ ପଠିଆଇ
ଦଦାଛଙ୍କ ସଙ୍ଗରେ
ଆଣିବ ବୋଲି ପେଶିଲେ ଖରେ । ୪୨ ।

ଗୋସାଇଁ ଚ୍ୟାଉ ଦୁହେଁ ମିଶି ଖଣ୍ଡପଡ଼ାଠାକୁ ଶୀଘ୍ର ଗଲେ
ସେଠାରେ ମହନ୍ତ ରାଜାଙ୍କୁ ଦର୍ଶନ କରି ସମସ୍ତ କହିଲେ
ଚଆଉ ଏକାନ୍ତରେ
ସବୁ କହିଲ ନୃପଙ୍କୁ ଧୀରେ । ୪୩ ।

ନୃପବର ତାହା ଶୁଣି ମାନସରେ ଅତ୍ୟନ୍ତରେ କ୍ରୋଧ ହେଲେ
ତାଙ୍କ ସଙ୍ଗେ ଥିବା ବୈଷ୍ଣବମାନଙ୍କୁ ସଙ୍ଗେ ଘେନ ବାହାରିଲେ
ଦଶପଲ୍ଲ ରାଜାଙ୍କୁ
ଲେଖି ଆଣିଲେ ଗୁମୁସରକୁ । ୪୪ ।

ଖଣ୍ଡପଡ଼ା ନୃପ ଭ୍ରମରବରେ ଯେ ନୃପ ସଙ୍ଗତେ ଆସିଲେ
ନରସିଂହପୁର ଶ୍ରୀହରିଚନ୍ଦନେ ତାହାଙ୍କ ସଙ୍ଗତେ ଥିଲେ
ନୃପତିଙ୍କୁ ଯେ ସଙ୍ଗେ
ନୃପ ଘେନାଇଁ ଆସିଲେ ବେଗେ । ୪୫ ।

(୧) ସପ୍ତଦଶ ତ୍ରିଂଶତ ଶକାବ୍ଦରେ ଜାଣ ଶ୍ରୀକର ଭଞ୍ଜ ରାଜନ
ଗୁମୁସରରେ ପ୍ରବେଶ ହୋନ୍ତେ ମାର୍ଗେ ଭେଟିଲେ ଯାଇ ନନ୍ଦନ
ତହୁଁ ଶୀଘ୍ରେ ଆସିଲେ
କୋକଳବାରେ ପ୍ରବେଶ ହେଲେ । ୪୬ ।

ବାରୁଡ଼ା ତୋଟାରେ ପରବେଶ ହୋଇ ସେଠାରେ ମୁକାମ କଲେ
କୁଲଡ଼ରୁ ଆସି ଧନଞ୍ଜୟ ଭଞ୍ଜେ ସଙ୍ଗତରେ ମଧ୍ୟ ଥିଲେ
ଅତି କ୍ରୋଧରେ ବାଣୀ
କହିଲେ ତାହାଙ୍କୁ ନୃପମଣି । ୪୭ ।

ଯେତେ କଥା ଆମ୍ଭେ ଶିକ୍ଷା ଦେଇଥିଲୁ ତହୁଁ କିଛି ନ ଘେନିଲ
କୁମ୍ଭୁନ ଘରକୁ ରୂପିଆ ନଦେଇ ନାନା ଅନ୍ୟାୟେ ରହିଲ

(୧) ୧୭୩୦ ଶକାବ୍ଦ = ୧୮୦୮ ଖ୍ରୀଷ୍ଟାବ୍ଦ ।

ପଠାଲନ୍ତୁ ପଲାଇ
ଆସିଲେ ଯେ ଜମାଦାର ଦୁଇ । ୪୮ ।

କୁମ୍ପୁନି ତମ୍ବୁରୁ ବଇଁଶୀ ବଜାଇ ନଉକରରେ ରଖିଲ
ଗୁମୁସରରୁ କେତେ ଲୋକ ମିଶାଇ ପାଞ୍ଚୋଟି କୁମ୍ପୁନି କଲ
ପର ରାଜ୍ୟକୁ ନଗ୍ରର
ପେଶି ଲୁଟିଲ ଧନ ଅପାର । ୪୯ ।

ଗୋସାଇଁ ଯେ ପାଖେ ଥିଲେ ସେ ତୁମ୍ଭଙ୍କୁ କିଛୁ ହେଲେ ନଂ କହିଲେ
ଦୁମାର୍ଗମାନଙ୍କେ ଗ୍ରହିଲ ଯେ ଏହି ଶିକ୍ଷା କି ତୁମ୍ଭଙ୍କୁ ଦେଲେ
ଏହି ରୂପେ ସେ କହି
ବାରୁଡ଼ା ତୋଠାକୁ ଶୀଘ୍ରେ ଯାଇ । ୩୦ ।

ରାମଚନ୍ଦ୍ର ପରମଗୁରୁଙ୍କୁ ରାଜଗୁରୁ ପଦ ଦେଇଥିଲେ
ତାଙ୍କଠାରେ କ୍ରୋଧ ହୋଇଣ ନୃପତି ସାଙ୍କୋଳି ଦେଇ ରଖିଲେ
ଲେଖା ବୃତ୍ତି ତାଙ୍କର
ଠଙ୍କା ଘେନଲେ ଅତି ସତ୍ୱର । ୫୧ ।

ଦୁର୍ଗାପ୍ରସାଦରେ ଭିତର ଲୋକେ ଯେ ଥିଲେ ସେହିଠାକୁ ଗଲେ
ଧନଞ୍ଜୟ ଭଞ୍ଜଙ୍କର ଆଚରଣ ଭିତରୁ ସବୁ ଶୁଣିଲେ
କ୍ରୋଧ ହୋଇ ନୃପତି
ବାରୁଡ଼ାକୁ ଆସିଲେ ଝଟତି । ୫୨ ।

କବି ତାରଣ ଚରଣକୁ ନିରତେ ମନରେ ଯେ ଧ୍ୟାନ କରି
ସୂର୍ଯ୍ୟମଣି ଟ୍ୟାଉ କହନ୍ତି ଯେ ଭବସାଗରୁ ହେବାକୁ ପାରି
ଏବେ ଦଶମ ଛାନ୍ଦ
ଶେଷ ହେଲା କୋଦବଦ ବୃନ୍ଦ । ୫୩ ।



# ଏକାଦଶ ଛାନ୍ଦ

**[ ରାଗ—ଖେମଟା ଏକତାଳ ]**

ଏଥୁ ଅନ୍ତେ ଶୁଣ ସୁବୁଦ୍ଧି ଜନ ଧନଞ୍ଜୟ ଭଞ୍ଜଙ୍କ ଆଚରଣ
ଉତର ବାଟରୁ ସମସ୍ତ ଶୁଣି ମନରେ କ୍ରୋଧ ହେଲେ ନରମଣି
ହେ ସୁଜନେ, ପିଲା ନମଣ ଯେତେ
ତାହାଙ୍କୁ କ୍ରୋଧ ହୋଇଲେ ନରତେ । ୧ ।

ବଳା ବୋଲି ଯହୁଁ ନମତା ଥିଲା ନୃପଙ୍କ ସମ୍ମୁଖକୁ ସେ ବାନେ ଗଲା
ତାକୁ ଦେଖି ନୃପ କ୍ରୋଧ ହୋଇଲେ ଦଣ୍ଡ କରେ ଧରି ତାକୁ ପିଟିଲେ
ହେ ସୁଜନେ, ତହୁଁ ଗଲା ପଳାଇ
ଧନଞ୍ଜୟ ଭଞ୍ଜଙ୍କୁ ତାହା କହି । ୨ ।

ତାଙ୍କ ପାଖରେ ଯେତେ ଦୁଷ୍ଟ ନର ତାଙ୍କୁ ଘେନିକରି କଲେ ବାହାର
ରାସରେ ତାଙ୍କୁ ସଙ୍ଗତେ ଘେନିଲେ ନୂଆଗଡ଼ ରାଜ୍ୟକୁ ପଳାଇଲେ
ହେ ସୁଜନେ, ନୃପ ଶ୍ରୀକର ଭଞ୍ଜେ
ଜଗନ୍ନାଥପ୍ରସାଦକୁ କଲେ ବଜେ । ୩ ।

ଜଗନ୍ନାଥ ଆଗୁଣ୍ଠି ଗୋସାଇଁଙ୍କି ଏ ବାହାରେ ଗୋପ ସାହୁଙ୍କୁ ଡ଼ାକି
ପୁଅଙ୍କୁ ଆଣିବାକୁ ପଠାଇଲେ ନୂଆଗଡ଼ ଯାଏ ସେ ଦୁହେଁ ଗଲେ
ହେ ସୁଜନେ, ଦୁହେଁ ଯେତେ କହିଲେ
ଧନଞ୍ଜୟ ଭଞ୍ଜେ ତା ନ ଘେନିଲେ । ୪ ।

ନୂଆଗଡ଼ ମାନ୍ଧାତା ଦେଖା ହେଲେ ଗଡ଼ରେ ବସା ଦେଇଣ ରଖିଲେ
ରାଜମର୍ଯ୍ୟାଦା ତାଙ୍କଠାରେ କଲେ ଏକାନ୍ତେ ତାଙ୍କ ସଙ୍ଗେ କଥା ହେଲେ
କହିଲେ ଆମ୍ଭ ଜ୍ୟେଷ୍ଠ ଝିଅଙ୍କୁ
ତୁମ୍ଭଙ୍କୁ ତ କରିବୁ ବିବାହକୁ । ୫ ।

ଅନସୁଗାଁ ଆଦି କମସରକୁ ଲେଖିଦିଅ ଆମ୍ଭ ମୂଳେ ଦେବାକୁ
ତୁମ୍ଭଙ୍କୁ ଆମ୍ଭେ ସହାୟ ହୋଇବୁ ଗୁମୁସରରେ ନେଇ ବସାଇବୁ
ସେ ତା ଶୁଣି, ସ୍ୱୀକାରକୁ କଲେ
ସେହି ରୂପରେ ପତ୍ର ଲେଖିଦେଲେ । ୬ ।

ସୀତାରାମ ଭଂଜେ ସଙ୍ଗତେ ଥିଲେ — ସେହିଠାରୁ ଖଣ୍ଡପଡ଼ାକୁ ଗଲେ
ସେହିଠାରେ କେତେ ଦିନ ସେ ରହି — ଦଶପଲ୍ଲକୁ ଚହିଁ ଶୀଘ୍ରେ ଯାଇ
ହେ ସୁଜନେ, ଶ୍ରୀକର ଭଂଜ ନୃପ
ପୁନ ଆସିବା ଶୁଣି ନୋହିଁ କୋପ । ୭ ।

ନମତା ଚନ୍ଦ୍ରଯୁକୁ ପଠାଇଲେ — ଦାଶପଲ୍ଲକୁ ଚିଠାଉ ଲେଖିଲେ
ପୁଅଙ୍କୁ ଶୀଘ୍ରେ ଦେବ ପଠିଆଇ — ଦଶପଲ୍ଲ ରାଜା ତାହାଙ୍କୁ କହି
ସେ ତା ଶୁଣି, ତଳେ ହେ ନ ଦେଖିଲେ
ଶ୍ରୀକର ଭଂଜେ ଯାହା କହିଥିଲେ । ୮ ।

ନମତା ଚନ୍ଦ୍ରଯୁ ଯାହା କହିଲା — ତାଙ୍କ ମନକୁ କିଛି ନ ପାଇଲା
ଚନ୍ଦ୍ରଯୁ ଚହିଁ ବାହୁଡ଼ି ଆସିଲା — ନୃପଙ୍କ ଆଗରେ ସବୁ କହିଲା
ତା ଶୁଣି ନୃପ ଦୁଃଖିତ ହୋଇଲେ
ଧନଂଜୟ ଭଂଜେ ସେଠାରୁ ଗଲେ । ୯ ।

ଖଣ୍ଡପଡ଼ା ନୃଆଗଡ଼କୁ ଯାଇ — ମାନ୍ଧାତାଙ୍କଠାରୁ ଶିକ୍ଷାକୁ ପାଇ
ଦୁଷ୍ଟ ଲୋକକୁ ଯେ ସଙ୍ଗ ସେ କଲେ — ବାଣପୁରରେ ଯାଇ ପ୍ରବେଶ ହେଲେ
ସେଠାରୁ ପୁନପଡ଼ା ମାଗିଲେ
ଗୁମୁସରେ ଯାଇ ପ୍ରବେଶ ହେଲେ । ୧୦ ।

କାନକୁଟରୁ ଟାମେ ଯାଇ ହେଲେ — ନଲଇ ପାସ ଘର ଲୁଟିକଲେ
ତାର ପୁଅକୁ ବାନ୍ଧି ଧରି କରି — ପଙ୍କାନସାହିକ ଗଲେ ବାହାରି
ବ୍ରାହ୍ମଣ ରଘୁ ମହାପାତ୍ରର
କିଛି ଦ୍ରବ୍ୟ ତାଙ୍କୁ ଦେଲା ସତ୍ୱର । ୧୧ ।

ତାକୁ କିଛି ଉପଦ୍ରବ ନକରି — ସେଠାରୁ ସେକ୍ଷଣି ଗଲେ ବାହାରି
ଭଗବାନପୁର ବାଟରେ ଯାଇ — କରଚୁଲିଠାରେ ପ୍ରବେଶ ହୋଇ
ସେଠାରେ ମୁକାମକୁ ସେ କରି
ରହନ୍ତେ ଦୁଷ୍ଟ ନଷ୍ଟ ଲୋକ ଧରି । ୧୨ ।

ସେହି ଗ୍ରାମର ଲୋକ ଶୀଘ୍ର ଯାଇ — କୁଲାଡ଼ଗଡ଼ରେ ପ୍ରବେଶ ହୋଇ
ଘର ଲୁଟିବାର ବାନ୍ଧି ନେବାର — ରାଜାଙ୍କ ଛାମୁରେ କଲେ ଗୋଚର

ଶ୍ରୀକର ଭଞ୍ଜେ ତାହା ଶୁଣିଲେ
କ୍ରୋଧାନଳରେ ଆବଷ୍ଟ ହୋଇଲେ । ୧୩ ।

ଯେହି ମୁହୂର୍ତ୍ତେ ପାଇକ ପଞ୍ଚାଶ        ପଠାଇଲେ ସେ ଭଞ୍ଜ ନରଈଶ
କରଚୁଲିଠାରେ ଯାଇ ଦେଖିଲେ        ଯୁଦ୍ଧ କରନ୍ତେ କେତେ ଲୋକ ମଲେ
ପଳାଇ ଯାଇଣ ଅନ୍ତ ଖରେ
ଲୁଚିଲେ ଯାଇ କେ ପୁନିପଡ଼ାରେ । ୧୪ ।

ଲୁଟିବା ପଦାର୍ଥ କେତେ ପାଇଲେ        କେତେ ଲୋକଙ୍କୁ ଯତ୍ନରେ ଧରିଲେ
କୁଲାଡ଼ଗଡ଼କୁ ବାହାର ଆସି        ନୃପତି ଘୁମୁରେ ସମସ୍ତ ଭାଷି
ଧରିବା ଲୋକଙ୍କୁ ବନ୍ଦୀ କଲେ
ଧନଞ୍ଜୟ ଭଞ୍ଜେ ଲୁଚି ରହିଲେ । ୧୫ ।

ଗୋପୀନାଥ ଭଞ୍ଜେ ଯେ ପେଗୀ ଦାସ        ଜାଉଗୁନ୍ତ ମେଦମାରି ଦଣ୍ଡପାଶ
ଲାଲ ଆଦି ଦୁଷ୍ଟ ଲୋକେ ଯେ ଥିଲେ        ଧନଞ୍ଜୟ ଭଞ୍ଜଙ୍କୁ ସାକ୍ଷାତ ଦେଲେ
ଶୀଘ୍ରରେ ପର ରାଜ୍ୟକୁ ଯାଇ
ଲୁଟିକରି ଧନ ଆଣିବା ବହି । ୧୬ ।

ଆଠଗଡ଼ ଧରାକୋଟକୁ ଗଲେ        ପୂର୍ବଖଣ୍ଡରୁ ମଧ୍ୟ ଲୁଟି କଲେ
ଶ୍ରୀକର ଭଞ୍ଜଙ୍କ ନାମରେ ଖ୍ୟାତ        ହୋଇ ଲୁଟିକଲେ ବୋଲି କହତ
ସୁଜନେ ତାଲୁକାରୁ ସାଧନ
ନୋହିଲା ବହିଗଲା କେତେ ଦିନ । ୧୭ ।

ଶ୍ରୀକର ଭଞ୍ଜ ନୃପତିଙ୍କ ଠାକୁ        ଠଙ୍କା ନିମିତ୍ତେ ସାହେବ ଲୋକଙ୍କୁ
ପଠାଇଲେ ଠଙ୍କା କିଛି ନଗଲା        ଠଙ୍କାକୁ ଭରଣେ ଧାନ ହୋଇଲା
ଏହି ରୂପେ ଗଲା କେତେ ମାସ
କ୍ରମ କ୍ରମରେ ହୋଇଗଲା ଶେଷ । ୧୮ ।

ଜଳନ୍ତର ସାନପାଣ୍ଟା ବନ୍ଦୀରେ        ଥିଲେ ପଳାଇ ଗଲେ ଗୁମୁସରେ
ଶ୍ରୀକର ଭଞ୍ଜ ରାଜାଙ୍କ ଘୁମୁରେ        ଦେଖାହୋଇ ରହିଲେ କୁଲାଡ଼ରେ
ସୁଜନେ ତାଙ୍କୁ ଯେ ସରଞ୍ଜାମ
ଲୁଗିଲା ଯେତେ ଦେଲେ ବହି ପ୍ରେମ । ୧୯ ।

କେତେ ଦିନ ଉତ୍ତାରୁ ସେଥୁଁ ପୁଣି        ପାରଳାଖେମଣ୍ଡିର ନୃପମଣି
ଜଗନ୍ନାଥ ଦେଉ ଗୁମୁସରକୁ        ଆସିଲେ ସଙ୍ଗେ ଘେନି କୁଟୁମ୍ବକୁ

ହେ ସୁଜନେ, ତାଙ୍କୁ କର ଆଦର
ରଖାଇଲେ ତହିଁ ଭଞ୍ଜ ନୃପବର । ୨୦ ।

ଗଞ୍ଜାମରେ ମଣିଦେଓ ରାଜନ ବନ୍ଦୀରେ ଥିଲେ ହୋଇ ଅତି ଦୀନ
ଭଞ୍ଜ ରାଜାଙ୍କ ଶୁମୁରୁ ଖବର ଦେଲେ ଆମ୍ଭଙ୍କୁ ଏଠାରୁ ଉଦ୍ଧର
ହେ ନୃପତି, ଯେବେ ଆମ୍ଭଙ୍କୁ ନେବ
ପୃଥିବୀରେ ତୁମ୍ଭ ଯଶ ରହିବ । ୨୧ ।

ତାହା ଶୁଣି ନୃପ ଉଗ୍ର ହୋଇଲେ ଧନର୍ଥ ଲୋକମାନଙ୍କୁ ବୋଇଲେ
ଭେଦ ଲୋକଙ୍କୁ ପଠାଇ ଆଣ ପଞ୍ଚାଶ ପାଇକ ପେଷିଲେ ବେଗେଣ
ସୁଜନେ, ବନ୍ଦୀରୁ ଫେରାଇ
ଶୁମୁସରକୁ ଘେନଗଲେ ବାହି । ୨୨ ।

କୁଲଡ଼ାଗଡ଼ରେ ପ୍ରବେଶ ହେଲେ ନଗର ଭିତରେ ତାଙ୍କୁ ରଖିଲେ
ଅନେକ ଧରଞ୍ଜାମ ମାନ ଦେଇ ଚରଚା କଲେ ଭଂଜ ନରସାଇଁ
ହେ ସୁଜନେ, ଏ ରୂପେ କେତେ ଦିନ
ଗଲା ନବାବ ଶୁଣିଲେ ଏମାନ । ୨୩ ।

ତାଙ୍କ ଗ୍ରାମ ପର୍ଯ୍ୟନ୍ତରେ ଆସିଲେ ଭଂଜ ନୃପବରଙ୍କୁ ଡ଼କାଇଲେ
ଚାରି ସହସ୍ର ପାଇକ ସଭରେ ଘେନାଇଁ ନୃପତି ଆସିଲେ ଖରେ
ହେ ସୁଜନେ, ବସ୍ତ୍ର ଚନ୍ଦରେ ବସା
କଲେ ଶ୍ରୀକର ଭଂଜ ମହାଯଶା । ୨୪ ।

ନବାବଙ୍କ ହଜୁରେ ଦେଖା ହେଲେ ନବାବ ନୃପବରଙ୍କୁ କହିଲେ
ସାନପାଷ୍ଟା ଜଗନ୍ନାଥ ଦେଓଙ୍କୁ ରଖିଲ ତୁମ୍ଭେ ହୋଇ ସହାୟକୁ
ହେ ସୁଜନେ, ତାହା ଶୁଣି ନୃପତି
କହିଲେ ଆମ୍ଭ ରାଜ୍ୟରେ ନାହାନ୍ତି । ୨୫ ।

ମଣିଦେଓଙ୍କୁ ଗଂଜାମରୁ ଆଣି କୁଲାଡ଼ରେ ରଖିଅଛନ୍ତି ପୁଣି
ଆମ୍ଭଠାରେ ସମର୍ପି ଦିଅ ତାଙ୍କୁ ଶୁଣି ନୃପ କହିଲେ ଏ ଗିରକୁ
ହେ ସାହେବ, ଆଜ ବସାକୁ ଯିବୁ
କାଲି ପ୍ରଭାତୁ ଆସି ତା କହିବୁ । ୨୬ ।

ଏହି ରୂପେ କହି ବସ୍ତ୍ରଚନ୍ଦ ଗଲେ ସେହି ରାତ୍ରେ କୁଲାଡ଼ ବିଜେ କଲେ
ପ୍ରଭାତୁ ସାହେବ ସେ ତାହା ଶୁଣି ଗଂଜାମକୁ ଶୀଘ୍ରେ ଗଲେ ସେ କ୍ଷଣି
ବେବର୍ତ୍ତା ପାତ୍ର ମନ୍ତ୍ରୀ ଡ଼ାକଲେ
ସାହେବ ବପିଣ ବିଚାର କଲେ । ୨୭ ।

ସାହେବ ଏହି ପ୍ରସଙ୍ଗମାନଙ୍କୁ    ହୃଦୟରେ ସେ କରି କଳ୍ପନାକୁ
ଗୌନରମେଣ୍ଟଠାକୁ ଅରଜ    ଲେଖିବାର ମୂଳ କଲେ ଦରଜ
ଆଲୋଚନାଦି ସମସ୍ତ କରି
ଲେଖିଲେ କାଗଜ କଲମ ଧରି । ୨୮ ।

ଶ୍ରୀକର ଭଞ୍ଜ ରାଜାଙ୍କ କୁମର    ଧନଞ୍ଜୟ ଭଞ୍ଜ ନାମ ତାଙ୍କର
ତାଙ୍କୁ ରାଜତ୍ୱ ଦେଇ ଗୁମୁସରେ    ଶ୍ରୀକର ଭଞ୍ଜେ ତୀର୍ଥକୁ ସତ୍ୱରେ
ଗମିଲେ, ପୁଣ ରାଜତ୍ୱ କଲେ
ସମ୍ବତ୍ସର ପୂର୍ଣ୍ଣେ ସେ ବାହୁଡ଼ିଲେ । ୨୯ ।

ପୁଅଙ୍କର କୋଉଁ ପ୍ରକାର ଦେଖି    କ୍ରୋଧ ହେଲେ ସେ ଓପ୍ରୋଧ ଉପେକ୍ଷି
କଟକ ତରଫକୁ ମେଣ୍ଟ ଗଲେ    ଶ୍ରୀକର ଭଞ୍ଜ ଟଙ୍କା ନ ଦେଲେ
ମନରେ ବହୁତ କରି ଦକା
ନ ରଖିଲେ ପୁଣି ହୃଦରେ ଶଂକା । ୩୦ ।

କୁମ୍ପାନି ତମ୍ବୁରୁ ଲୁଟି କି କଲେ    କଳଧା ଲୋକ ଅନେକ ରଖିଲେ
ପର ରାଜ୍ୟରୁ ଧନ ଲୁଟି ନେଲେ    ଆମ୍ଭଙ୍କୁ ସେ ଆଉ ଭୟ ନ କଲେ
ହେ ସୁଜନେ, ଗୌନରଠାକୁ
ଲେଖିଲେ ସାହେବ ହୋଇ କ୍ରୋଧକୁ । ୩୧ ।

ତା ଶୁଣି ଚନାପାଟଣା ଗୌନର    କଲିକତାକୁ ଲେଖିଲେ ସତ୍ୱର
ସେଠାରୁ ସିଲେ ହେବା ଜାଣିକରି    ବହୁ ଲସ୍କର ସେ ତୟାର କରି
ହେ ଜନେ, ଉଦ୍ଦଯୋଗକୁ କଲେ
ଏ ଅନ୍ତେ ଶୁଣ ଯାହା ହେଲା ଭଲେ । ୩୨ ।

ଚନାପାଟଣାରୁ ଚଢ଼ି ବୋଇତ    ସେଠାରୁ ଲସ୍କର ଆସି ଭରିତ
ଗଞ୍ଜାମରେ ଆସି ପ୍ରବେଶ ହେଲେ    ଗୁମୁସରରେ ପୂରିବା ଭାଳିଲେ
ନୃପତି ଶୁଣି ଏହି ଖବର
ଦୁର୍ଗାପ୍ରସାଦେ କଲେ ଯାଇ ଘର । ୩୩ ।

କଲିକତାରୁ ସତ୍ୱରେ ଆସିଲେ    ତିନି ପଟଲାମ ଲସ୍କର ଭଲେ
ଗୌନର ସାହେବଙ୍କୁ ସଙ୍ଗରେ ଦେଇ    ପଠିଆଇଲେ ଅତି କ୍ରୋଧ ହୋଇ
ସେ ବୋଇତ ଚଢ଼ି ଚେନାପାଟଣା
ପ୍ରବେଶ ହେଲେ ହୋଇ ହୃଷ୍ଟମନା । ୩୪ ।

ଲସ୍କର ଘେନ ଗଞ୍ଜାମ ପ୍ରବେଶ ଗୌନର ସାହେବ ହୋଇଣ ହରଷ
ସାରା ଲସ୍କର ଘେନ ବାହାରିଲେ ବାଜା ବଜାଇ ମଣ୍ଟୀ ଥରାଇଲେ
ହେ ସୁଜନେ, ଏଥୁ ଅନ୍ତରେ ଶୁଣ
ଧନଞ୍ଜୟ ଭଞ୍ଜଙ୍କ ଆଚରଣ । ୩୫ ।

ଧନଞ୍ଜୟ ଭଞ୍ଜେ ବାଣପୁରରେ ଧୀରେ ପ୍ରବେଶ ହେଲେ ଗଞ୍ଜାମରେ
ଗୌନର ସାହେବଙ୍କୁ ଯେ ଦେଖା ହେଲେ ସମସ୍ତ ବିଷୟମାନ କହିଲେ
ହେ ସୁଜନ, ବଡ଼ ଭରସା ଦେଇ
ଧନଞ୍ଜୟ ଭଞ୍ଜଙ୍କୁ ଯେ ସେ କହି । ୩୬ ।

ତାଙ୍କୁ ସଙ୍ଗେ ଘେନ ଗଞ୍ଜାମରୁ ବାହାରିଲେ ହୋଇ ହୃଦେ ଅତି ଧୀରୁ
ବାଟରେ ଯେ ଲୋକ ଜଗାଇଥିଲେ ନତି ନତି ସେ ଖବର ବୁଝିଲେ
ସୁଜନେ, ଶଆଉ ଧନଜାରେ
ରହିଲେ ଲସ୍କର ଘେନ ସଙ୍ଗରେ । ୩୭ ।

ଚୈତନ୍ୟ ଚ୍ୟାଉ ଲସକର ଧରି ଧନଜାରେ ରହିଲେ ବସା କରି
ଗୌନର ସାହେବ ତିନ ପଟଲମ ଘେନ ଆସିବାରେ କଲେ ମୁକାମ
ସୁଜନେ, ତାହା ଶୁଣିବା କ୍ଷଣି
ଚୈତନ୍ୟ ଚ୍ୟାଉ ପଳାଇଲେ ଜାଣି । ୩୮ ।

ଗୌନର ସାହେବ ଧନଜା ପ୍ରବେଶ ହୋଇ କାହାକୁ ନ ଦେଖିଲେ ଦୃଶ
ସେଠାରୁ ବିସ୍ତୁ ଚକ୍ର ବାଟେ ଗଲେ ନୃଆଗ୍ରାମରେ ପ୍ରବେଶ ହୋଇଲେ
ହେ ସୁଜନେ, ସେହିଠାରୁ କୁଲଡ଼
ପ୍ରବେଶ ହୋଇ ପୋଡ଼ିଦେଲେ ଗଡ଼ । ୩୯ ।

ଧନଞ୍ଜୟ ଭଞ୍ଜ ସଙ୍ଗରେ ଥିଲେ ଦଦାଙ୍କ ଛେଦ ଭେଦ କହିଲେ
ତା ଶୁଣି ସାହେବ ହୋଇଲେ ଖୁସି ନୃପଙ୍କୁ ଆଲିଙ୍ଗନ କଲେ ହସି
ନୃପ ଅତ୍ୟନ୍ତ ଆନନ୍ଦ ହୋଇ
ଶିରରେ ହାତ ପକାଇଲେ ନେଇ । ୪୦ ।

କୁଲଡ଼ ଧନଞ୍ଜୟପୁର ଘେନ ପଡ଼ି ରହିଲେ ପଟଲମ ତିନ
ଯେତେ କୁମ୍ଭୁନ ରାଜାଙ୍କ ପାଖରେ ଥିଲେ ସେମାନେ ପଳାଇଲେ ଖରେ
ସେମାନେ କଟକ ତରଫରେ
ରହିଲେ ଶଙ୍କା ରଖି ମାନସରେ । ୪୧ ।

ଗୁମୁସର ଲୋକେ ମାତ୍ର ରହିଲେ ବିଦେଶୀ ଲୋକେ ସର୍ବେ ପଳାଇଲେ
ସାହେବ ସେ ଧନଞ୍ଜୟ ଭଞ୍ଜଙ୍କୁ କହିଣ ଗଲେ ଦୁର୍ଗାପ୍ରସାଦକୁ
ହେ ସୁଜନେ, ତାଙ୍କ ସଙ୍ଗରେ ଭଲେ
ଧନଞ୍ଜୟ ଭଞ୍ଜ ତ ଯାଇଥିଲେ । ୪୨ ।

ଦୁର୍ଗାପ୍ରସାଦରେ ହୋନ୍ତେ ପ୍ରବେଶ ମାଳ ଲୋକେ ସର୍ବେ ହୋଇ ସରୋଷ
ଅଲକ୍ଷ୍ୟରେ ରହି ଗୁଳି ଆଦି କାଣ୍ଡ ମାରି ଗଡ଼ାଇଦେଲେ କେତେ ପିଣ୍ଡ
ହେ ସୁଜନେ, କଲେ ପଥର ଫିଙ୍ଗି
କେତେ ଲୋକଙ୍କ ଅସ୍ଥି ଦେଲେ ଭାଙ୍ଗି । ୪୩ ।

ସେଠାରେ କ୍ଷଣେ ମାତ୍ର ହିଁ ନ ରହି ପଳାଇ ଆସିଲେ ଭୟକୁ ବହି
ପୃଷ୍ଠରେ ଦୁଇ ପାର୍ଶ୍ୱରେ ଜଗି ବାହୁଡ଼ି ଆସିଲେ ହୋଇଣ ବେଗି
ହେ ସୁଜନେ, କେତେ ପ୍ରାଣ ଛାଡ଼ିଲେ
କେତେ ଲୋକେ ଘାଆ ହୋଇ ପଡ଼ିଲେ । ୪୪ ।

ଆଘୁଷ ଯେତେ ଲୋକଙ୍କର ଥିଲେ ସେମାନେ ଆସି କୁଲଡ଼େ ରହିଲେ
କେତେ ଘଇଲା ଲୋକଙ୍କୁ ଆଣିଲେ ସମସ୍ତେ ଅତ୍ୟନ୍ତ କଷ୍ଟ ପାଇଲେ
ହେ ସୁଜନେ, ଧନଞ୍ଜୟ ଭଂଜଙ୍କୁ
ସାହେବ ନେଇ ଆସିଲ କୁଲଡ଼କୁ । ୪୫ ।

ସେଠାରେ ମଧ୍ୟ ରହି ନପାରିଲେ ଗୁରୁପାଖ ଜଗି କରି ମାଇଲେ
ପୁରୁଣା ଗୁମୁସରରେ ପ୍ରବେଶ ହୋଇ ଧନଂଜୟ ଭଂଜଙ୍କୁ କଶ
ହେ ସୁଜନେ, ଗୁମୁସରରେ କଲେ
ପୁରୁଣା ଗୁମୁସରରେ ରହିଲେ । ୪୬ ।

(୧) ସପ୍ତଦଶଶତ ଦ୍ୱାବିଂଶ ଶକ ଧନଂଜୟ ଭଂଜେ ଛାଡ଼ିଲେ ଓକ
ନୂଆଗଡ଼ ଖଣ୍ଡପଡ଼ାରେ ରହି ଦଶପଲ୍ଲା ରାଜ୍ୟକୁ ମଧ୍ୟ ଯାଇ
ହେ ସୁଜନେ, ସେଠୁଠାରୁ ଫେରିଲେ
ବାଣପୁରରେ ସେ ଆସି ରହିଲେ । ୪୭ ।

ଏ ରୂପେ ତିନ ସମ୍ବତ୍ସର ଗଲା ସପ୍ତଦଶଶତ ଶକାବ୍ଦ ପୂରିଲା
(୨) ପଞ୍ଚବିଂଶକ ଅଧିକ ହେଲେ ଧନଂଜୟ ଭଂଜେ ନୃପ ହୋଇଲେ

---

(୧) ୧୭୨୨ ଶକାବ୍ଦ = ୧୮୦୦ ଖ୍ରୀଷ୍ଟାବ୍ଦ । (୨) ୧୭୨୫ ଶକାବ୍ଦ = ୧୮୦୩ ଖ୍ରୀଷ୍ଟାବ୍ଦ ।

ହେ ସୁଜନେ, ନାଥ ବେବର୍ତ୍ତା ପାଶ
ଗୌନ ସାହେବ ଜାଣି ହେଲେ ପାଶ । ୪୮ ।

ଧନଂଜୟ ଭଂଜେ ହୋନ୍ତେ ନୃପତି  ଦୁଷ୍ଟ ଗଣ୍ଡ ଲୋକମାନେ ପ୍ରକୃତି
ଯୋଗୀନାଥ ଭଂଜ ଯେ ମେଦାମାରୀ  ଦ୍ୟବହାର କଲେ ହୋଇ ଅଧରୀ
ସୁଜନେ, ନାଥ ବେବର୍ତ୍ତା ଜାଣି
ନବାବଙ୍କଠାରେ କହିଲେ ପୁଣି । ୪୯ ।

ଶ୍ରୀକର ଭଂଜ ରାଜ ଉଦଗିର  କହିବାରୁ ଦୁଷ୍ଟ ଲୋକେ ବାହାର
କନ୍ଧମାଳ କଦଗାଳ ସହିତ  ହୋଇ ରାଜ୍ୟ ଦଖଲ କଲେ ବହୁତ
ହେ ସୁଜନେ, ଗ୍ରାମମାନ ମୋଡ଼ିଲେ
ଯାହା ପାଇଲେ ଲୁଟି କରି ନେଲେ । ୫୦ ।

ଗାଈ ମହିଷି ଆଦି ବଳୀବର୍ଦ୍ଦ  ସମସ୍ତ ନେଇଗଲେ ଦେଇ ଖେଦ
ରଇତମାନଙ୍କୁ ଦେଖି ହାଣିଲେ  ରାଜ୍ୟ ଛାଡ଼ି ସମସ୍ତେ ପଳାଇଲେ
ହେ ସୁଜନେ, ଘରେ ମାଲିକ ହୋଇ
ରାଜ୍ୟ ନିକଟେ ନ ରହିଲେ କେହି । ୫୧ ।

ଗୌନର ସାହେବ ନୂଆଗ୍ରାମଠାକୁ  ଆସି ରହିଲେ କରି ମୁକାମକୁ
ଶ୍ରୀକର ଭଂଜଙ୍କଠାକୁ ଲେଖିଲେ  ତୁମ୍ଭେ ଦେଖା ହୁଅ ଆମ୍ଭ ହଜୁରେ
ହେ ସୁଜନେ, ଶୁଣି ଭଂଜ ରାଜନ
କୁଲଡ଼ଠାକୁ ଆସିଲେ ବହନ । ୫୨ ।

ସାହେବ ନାଥ ବେବର୍ତ୍ତାଙ୍କୁ କହି  ପେଷିଲେ ନୃପଠାକୁ ଭରା ହୋଇ
ଏଣିକ ଫିତୁରାଦି ମାନ କର  ନିଶ୍ଚିନ୍ତ ହୋଇ ମାଳେ ଘର କର
ହେ ସୁଜନେ, ବାରସହସ୍ର ଟଙ୍କାର
ଜାଗାକୁ ଦେବୁ ସୁଖେ ଭୋଗକର । ୫୩ ।

ଧନଂଜୟ ଭଂଜେ ରାଜ୍ୟରେ ରାଜା  ହୋଇ ପାଳନ୍ତୁ ସୁଖରେ ପ୍ରଜା
ତୁମ୍ଭେ ମାଳ ଲୋକଙ୍କୁ ପ୍ରତିପାଳ  ନିଶ୍ଚିନ୍ତେ ରହ କିଛି ନ ଭାଳ
ହେ ସୁଜନେ, ନାଥ ବେବର୍ତ୍ତା ଗଲେ
ସମସ୍ତ କଥା ରାଜାଙ୍କୁ କହିଲେ । ୫୪ ।

ନୂଆଗ୍ରାମଠାରୁ କୁଲାଡ଼ ଘେନ          ଗାଲେଷ୍ଠ କୋକଳବା ମୂଠା ବେନ
ପାଞ୍ଚଗଡ଼ ଉତ୍ତର ଗଡ଼ତଳ          ଜାକସାବାଡ଼ ପୂର୍ବଗଡ଼ ତଳ
ସୁଜନେ, ବେବର୍ତ୍ତାଙ୍କୁ କହିଲେ
ଏତେକ ଜାଗା ଦିଅ ଆମ୍ଭ ମୁନେ । ୫୫ ।

ବେବର୍ତ୍ତା ଶୁଣି ଏମନ୍ତ ଉତ୍ତର          ସାହେବଙ୍କ ଠାରେ କଲେ ଗୋଚର
ଶୁଣି ସାହେବ ସ୍ୱୀକାର କଲେ          କହିବା ପ୍ରକାରରେ ଲେଖିଦେଲେ
ହେ ସୁଜନେ, ନାଥ ବେବର୍ତ୍ତା ଯାଇ
ଶ୍ରୀକର ଭଞ୍ଜଙ୍କୁ ସେ ଲେଖା ଦେଇ । ୫୬ ।

ଶୁଣି ରାଜନ ସନ୍ତୋଷ ହୋଇଲେ          କୁଲାଡ଼ଗଡ଼ରେ ମୁକାମ କଲେ
ଦୁର୍ଗାପ୍ରସାଦରେ କଲେ ନହର          ମାନ ବୃଲ କନ୍ଧଙ୍କୁ ଆପଣାର
ହେ ସୁଜନେ, କରି ସୁଖେ ରହିଲେ
କୁଲାଡ଼ ଆସି ପୁଣି ଯାଉଥିଲେ । ୫୭ ।

ଗୌନ ସାହେବ କହି ବାହୁଡ଼ିଲେ          ପୁରୁଣା ଗୁମୁସରକୁ ଆସିଲେ
ଧନଞ୍ଜୟ ଭଞ୍ଜେ ଦେଖା ହୋଇଲେ          ତାଙ୍କୁ ସାହେବ ଡାକି କହିଲେ
ହେ ରାଜନ, ଦୁଷ୍ଟଜନମାନଙ୍କୁ
ନ ରଖିବଟି କହିଲ ତୁମ୍ଭଙ୍କୁ । ୫୮ ।

କିସ୍ତି ବାଇଦା ପ୍ରକାରେ ଜମାକୁ          ପଠିଆଉ ଥିବଟି ଗଞ୍ଜାମକୁ
ଅନ୍ୟାୟ ମାନ କିଛୁ ନ କରିବ          ପ୍ରଜାମାନଙ୍କ (୧) ଫିରାଦା ବୁଝିବ
ହେ ରାଜନ, ଏତେ କହିଲୁ ମାନ
ନାଥ ବେବର୍ତ୍ତାଙ୍କୁ କରିବ ପାନ । ୫୯ ।

ଏତେ କହି ସାହେବ ଚଳିଗଲେ          ଧନଞ୍ଜୟ ଭଞ୍ଜ ରାଜା ରହିଲେ
ପର ରାଜ୍ୟରେ ଥିଲେ ପ୍ରଜାଚୟ          ତାଲୁକାରେ ଆସି କଲେ ନିଳୟ
ହେ ସୁଜନେ, ଗ୍ରାମମାନେ ବସନ୍ତି
ହେଲ ସର୍ବଲୋକେ ହୋଇଲେ ସୁସ୍ଥି । ୬୦ ।

ଏଥୁ ଅନନ୍ତରେ ଶୁଣ ହେ ଜନ          ଧନଂଜୟ ଭଂଜ ହୋନ୍ତେ ରାଜନ
ଦୁଷ୍ଟ ଖଣ୍ଡ ଲୋକମାନେ ପ୍ରବର୍ତ୍ତି          ରାଜ୍ୟରେ ଅଧିକାର କଲେ ନିତି

(୧) ଆପତ୍ତି ।

ହେ ସୁଜନେ, ସେ ଯୋଗୀନାଥ ଭଂଜେ
ରାଜଗୁରୁ ମେଦ୍ଧମୀର ସହତେ । ୭୧ ।

ଏମାନେ ବ୍ୟବହାରକୁ ବୁଝିଲେ          ବେବର୍ତ୍ତାଙ୍କୁ ସେ କେହି ନ ମାନିଲେ
ପାଷ ହେବା ପରେ ସେ ମେଦ୍ଧମୀର          ବ୍ୟବହାର କଲା ହୋଇ ଅଧୀର
ହେ ସୁଜନେ, ସହଜେ ତ ସେ ମୂର୍ଖ
ଦୁଷ୍ଟଜନମାନେ ହେଲେ ତା ପାଖ । ୭୨ ।

ବୁଗୁଡ଼ା ମୂଠା ଯୋଗୀନାଥ ଭଂଜେ          ଆଶାରେ ଆପେ ବୁଝିଲେ ସହଜେ
ବେବର୍ତ୍ତା ଅଧିକାର କଉଁଠାରେ          ନ ରହିଲା ସେ ଯାଇ ଅନ୍ତ ଖରେ
ସୁଜନେ, ସାହେବଙ୍କୁ କହିଲେ
ଯୋଗୀନାଥ ଭଂଜଙ୍କୁ ଧରି ନେଲେ । ୭୩ ।

ଗଂଜାମ ଗଡ଼େ ରଖିଲେ ବନ୍ଦୀରେ          ବେବର୍ତ୍ତା ଆସି ରହିଲେ ରାଜ୍ୟରେ
ମେଦ୍ଧମୀରୟୁ ଜାଣି ପଳାଇଲା          ନୂଆଗଡ଼ ରାଜ୍ୟେ ଯାଇ ରହିଲା
ସୁଜନେ, ଯାବତ ଅଧିକାର
କଲେ ନିତ୍ତ ବେବର୍ତ୍ତା ଦ୍ୱିଜବର । ୭୪ ।

ଆମ୍ଭ ଜନଙ୍କୁ ଡ଼କାଇ ନେଲେ          ଚ୍ୟାଉ ଅଧିକାର ତାଙ୍କୁ ଦେଲେ
ଗୋପୀନାଥ ଭଂଜେ ଗଂଜାମ ଗଡ଼ରୁ          ବନ୍ଦୀରୁ ପଳାଇଲେ ହୋଇ ଖରୁ
ସୁଜନେ, ନୂଆଗଡ଼ରେ ରହିଲେ
ମାନ୍ଧାତା ଗ୍ରାମ ଦେଇଣ ରଖିଲେ । ୭୫ ।

ବେବର୍ତ୍ତା ସବ ଅଧିକାର କଲେ          ସାଧନ ଟଙ୍କା ଯେତେ ଜମା ହେଲେ
ସାହେବ ଖାଂଜନାକୁ ପଠିଆଇ          ରାଜାଙ୍କ ଭିତର ବସ୍ତୁକୁ ଦେଇ
ହେ ସୁଜନେ, ଜାଣି ଆମ୍ଭ ଜନକ
ବେବର୍ତ୍ତା କଲେ ଅଧିକାର ଯାକ । ୭୬ ।

ଦଇବକୁ ତ ବଳ ନାହିଁ ନର          ଆୟୁଷ ସରିଯାନ୍ତେ ବେବର୍ତ୍ତାର
ପରଲୋକକୁ କରନ୍ତେ ଗମନ          ସାହେବ ସେ ବାର୍ତ୍ତା ଶୁଣି ବହନ
ହେ ସୁଜନେ, ଏମନ୍ତରୁ ନିଶ୍ଚିନ୍ତ
ପଣ୍ଡିତଙ୍କୁ ସେ ପେଶିଲେ ଝଟନ୍ତ । ୭୭ ।

ସେ ଆସି ରାଜ୍ୟେ ଅଧିକାର କଲା    ଧନୁଞ୍ଜୟ ଭଞ୍ଜଙ୍କୁ ନ ମାନିଲା
ଘାଟ ପଠାଇ ଆମ୍ଭ ଜନକଙ୍କୁ    ଗଡ଼ରୁ ଘେନିଗଲା ଗଣକଙ୍କୁ
ହେ ସୁଜନେ, କାର୍ଯୀ ମୁସ୍ତାଜରଙ୍କୁ
ଧନଞ୍ଜୟ ଭଂଜେ ଡାକି ଗଡ଼କୁ । ୬୮ ।

ଆମ୍ଭଙ୍କୁ କହି ତାଙ୍କ ସଙ୍ଗତରେ    ସାହେବଙ୍କଠାକୁ ପଠାଇ ଲେଖରେ
ସେ ତାଲୁକାରେ କମା ଥିଲେ ଆମ୍ଭେ    ରହିବୁ ନାହିଁ କହିଲୁ ଅଦମ୍ଭେ
ସାହେବ, ଆମ୍ଭ ରାଜ୍ୟ ବେଭାର
ଜାଣିବା ଲୋକଙ୍କୁ ପେଶ ହଜୁର । ୬୯ ।

ଶୁଣି ସାହେବ ସୁଖିତ ହୋଇଲେ    ବେବର୍ତ୍ତା ଭାଇ ବ୍ରହ୍ମାଙ୍କୁ ଡାକିଲେ
ଗୁମୁସରକୁ ତୁମ୍ଭେ ଶୀଘ୍ର ଯାଇ    ଭଂଜ ରାଜାଙ୍କଠାରେ ଦେଖା ହୋଇ
ସେ ମାମୁଲୁ ପ୍ରକାରେ ବେଭାର
କରିଣ ରଇତଙ୍କୁ ସୁଖୀ କର । ୭୦ ।

ଶୁଣି ମାର୍କଣ୍ଡ ବ୍ରହ୍ମା ଗୁମୁସର    ଯାଇ କଲେ ସମସ୍ତ ଅଧିକାର
ଆମ୍ଭ ଜନକଙ୍କୁ ରଖି ପାଖରେ    ବ୍ୟବହାର କଲେ ହରଷ ଭରେ
ସୁଜନେ, ରାଜାଙ୍କୁ ନ ମାନିଲା
ମାସକୁ ହଜାରେ ରୁପିଆ ଦେଲା । ୭୧ ।

ବଡ଼ ଅଦଉ ଅଟଇ ତ ସେହି    କାହାକୁ ହେଲେ କିଛି ଦେଲା ନାହିଁ
ନବମ ମାସ ସେ ବେଭାର କଲା    ବାର ହଜାର ରୁପିଆ ରଖିଲା
ସୁଜନେ, ନୃପ ଏମନ୍ତ ଜାଣି
ସାହେବଙ୍କଠାକୁ ଶୀଘ୍ର ଗଲେ ପୁଣି । ୭୨ ।

ଆମ୍ଭ ଜନକଙ୍କୁ ସଙ୍ଗରେ ନେଲେ    ସାହେବଠାରେ ସମସ୍ତ କହିଲେ
ନ ମାସରେ ବାର ହଜାର ଟଙ୍କା    ରଖିଲା ଆମ୍ଭଙ୍କୁ ନକରି ଶଙ୍କା
ସାହେବ, ଜମାବନ୍ଦିକ ସାର
କର ଆମ୍ଭ ମୁଳେ ଦଅ ସତ୍ୱର । ୭୩ ।

ଲକ୍ଷେ ଟଙ୍କା ତ ଜମା ଗୁମ୍ଫୁଘର ଘଞ୍ଚସ୍ତ୍ରୋର ସହସ୍ର କରି ନକର
ହିସାବ କରି ଦୁହିଙ୍କି ନେଲେ ବାଲଦାମାନ ନିର୍ଣ୍ଣୟକୁ କଲେ
ହେ ସୁଜନେ, କାର୍ଯ୍ୟୀମୂଠା ଗୋଟିକେ
ଜମା ସବୁ କଲେ ଅତି ଉତ୍ସୁକେ । ୭୪ ।

ଆମ୍ଭ ଜନକଙ୍କୁ ଚଆଜ୍ଞ କଲେ ଧମସ୍ତ ଲେଖା ତାଙ୍କୁ ସମର୍ପିଲେ
ଏ ରୂପେ ଗଲ କେତେ ସମ୍ବତ୍ସର ବାଇଦା ପ୍ରକାରେ ଟଙ୍କା ନକର
ହେ ସୁଜନେ, ଦାଖଲ ଖଜ୍ଞାନାରେ
କଲେ ଏଣିକ ଶୁଣ ସାଧୁ ନରେ । ୭୫ ।

ନାରାୟଣ ଭଞ୍ଜ ଚରଣ ଧ୍ୟାୟି ଧନମଣିମଣି ଚଆଜ୍ଞ କହି
ଭଂଜ ରାଜା ବଂଶାବଳୀମାନ ଏକାଦଶ ଛାନ୍ଦ ହେଲା ସମ୍ପୂର୍ଣ୍ଣ
ହେ ସୁଜନେ, ଏ ଅନନ୍ତ ଯେ ଚରିତ
ଆର ଛାନ୍ଦରେ ହେଲା ସେ ବ୍ୟକତ । ୭୬ ।

---

## ଦ୍ୱାଦଶ ଛାନ୍ଦ

### [ ରାଗ—ମଙ୍ଗଳ ବସନ୍ତ ]

ଏଥୁ ଅନନ୍ତରେ ଶୁଣ ସୁଜନ ଚୟ
ଶ୍ରୀକର ଭଂଜ ରାଜାଙ୍କର ଯେ ବିଷୟ । ୧ ।

ନୂଆଗ୍ରାମଠାରୁ ଯେତେ ଗ୍ରାମମାନଙ୍କ
ନିଆଜକୁ କରାଇଲେ ନୃପ ଭୂରିତ । ୨ ।

ପାଞ୍ଚଶତ ପାଇକାଦ ନୌକର କରି
ଗଡ଼ମାନଙ୍କୁ ବସାଇଲେ ଦଣ୍ଡଧାରୀ । ୩ ।

ଧନଂଜୟ ଭଂଜେ ତ ଧର୍ମକୋଟ ନାତି
ହୋଇ ଜନମ ହୋଇଥିଲେ ଏ କ୍ଷିତି । ୪ ।

ରଗଡ଼ା ଜମିଦାରଙ୍କ କନ୍ୟାକୁ ବଭା
ହୋଇଥିଲେ ସେ ନୃପବର ହୋଇ ଲୋଭା । ୫ ।

ତାଙ୍କଠାରେ ସଦୁ ଭଂଜ ହୋଇଣ ସୁତ
ପୂର୍ବରୁ ସେ ହୋଇଥିଲେ ଜାଣ ତ ଜାତ । ୬ ।

ଅନ୍ତର ଗିର ଭଞ୍ଜ ବୃନ୍ଦାବନ ଭଞ୍ଜ
ଏ ଉତ୍ତାରେ ଯାନ ସୁତ ଯେ ରାମ ଭଞ୍ଜ । ୭ ।

ରଘୁନାଥ ଭଞ୍ଜେ ତାଙ୍କ ପାଖେ ତ ଥିଲେ
ତାହାଙ୍କୁ ସେ ଥାଟ ରାଜା କଲେଟି ଭଲେ । ୮ ।

କୁଲଡ଼ ଗଡ଼ରେ ନିରନ୍ତରେ ସେ ରହି
ଏହି ରୂପେ ପାଞ୍ଚ ବର୍ଷ ଗଲାଟି ବହି । ୯ ।

ପୁରୁଣା ଗୁମୁସର ଗଡ଼ରେ ଯେ ସ୍ଥିତି
ଧନଂଜୟ ଭଂଜଙ୍କର ହୋଇଲା ନିତି । ୧୦ ।

ପ୍ରଥମରେ ଅମର ରାଜାଙ୍କ ଝିଅଙ୍କୁ
ବଭା ହେଲେ ନୃପବର ବହି ନେହକୁ । ୧୧ ।

ତାଙ୍କୁ ପାଟ ମହାଦେବୀ ନୃପତି କଲେ
ରଣପୁରେ ରାଉତ କନ୍ୟାକୁ ସେ ଭଲେ । ୧୨ ।

ବଭା ହୋଇ ବଉଦରେ ସେ ଏକ କନ୍ୟା
ବଭା ହେଲେ ନୃପ ହୋଇଣ ହୃଷ୍ଟମନା । ୧୩ ।

ଖଣ୍ଡପଡ଼ା ଭ୍ରମରବରଙ୍କର ଘରେ
ଏକ କନ୍ୟା ବଭା ହେଲେ ସେ ସ୍ନେହଭରେ । ୧୪ ।

ଦଶପଲରେ ରାମଚନ୍ଦ୍ର ଭଂଜଙ୍କର
ଝିଅ ଥିଲା ବଭା ହେଲେ ନୃପତିବର । ୧୫ ।

ନବଦୁର୍ଗ ମାନ୍ଧାତା ଆପଣା ଝିଅଙ୍କୁ
ବଭା କରିବୁ କରିଥିଲେ କୋବଲକୁ । ୧୬ ।

ବେଳଗଡ଼ ଅଳସୁ ଗାଁ ର କମସର
ମାନ୍ଧାତାଙ୍କୁ ଦେଲେ ସେ ଭଂଜ ନୃପବର । ୧୭ ।

ପ୍ରଥମରେ ବିବାଦ ନୋହିଲେ ବିଗୁଣ
ତାଙ୍କୁ ବିବାର୍ଦ୍ଧ ନକଲେ ସେ ଦଣ୍ଡଧାରୀ । ୧୮ ।

ଏଣୁ ଧନଂଜୟ ଭଂଜେ କ୍ରୋଧ ହୋଇଲେ
ଆମ୍ଭ ଗଡ଼ ଆମ୍ଭଙ୍କୁ ଦିଅ ହେ ବୋଇଲେ । ୧୯ ।

ସେ ଗଡ଼କୁ ବାନ୍ଧିଲେ କଟି ଦୃଢ଼ତର
ଧନଂଜୟ ଭଂଜଙ୍କୁ ନ ଦେଲେ ନିଜର । ୨୦ ।

ଆମ୍ଭ ଜନକଙ୍କୁ ରାଜ୍ୟ ପାଟ ସେ କଲେ
ଶ୍ରୀକରଣ ପଟ୍ଟନାୟକ ପଦ ଦେଲେ । ୨୧ ।

ରାଜ୍ୟଯାକ ଲେଖା ଆମ୍ଭଙ୍କୁ ସମର୍ପିଲେ
ଆମ୍ଭେ ପୁଣି ତାହା ସେ ବୁଝିଲୁଁ ଭଲେ । ୨୨ ।

ସେ ଗଡ଼ ବେନି ମାର ଆଣିବା ବିଷ୍ଣୁର
କଲେ ହେ ଧନଂଜୟ ଭଂଜ ନୃପବର । ୨୩ ।

ଆଣି ନପାରି ନିରୁଦ୍ୟମରେ ରହିଲେ
ଏଥୁ ଅନ୍ତେ ଧନଂଜୟ ଭଂଜେ ଯା କଲେ । ୨୪ ।

କହିବା ହେଉ ଭକ୍ତଜନେ ଶୁଣ ସେ ଗାନ୍ତ
ଧନଂଜୟ ଭଂଜେ ବିଗୁରିଲେ ଯେ ନିତ୍ତ । ୨୫ ।

(୧) ଦଦାଇଙ୍କ ମୂଳେ ପାଞ୍ଚ ମୁଠା ରହିଲା
ଏଣିକି ଦଖଣ୍ଡ ଗୁମୁସର ହୋଇଲା । ୨୬ ।

ଯଦୁ ଭଂଜ ନାମରେ ତ ପୁତ୍ର ଅଛନ୍ତି
ଦଦାଇଙ୍କ ଉତ୍ତାରୁ ସେ ହେବ ନୃପତ୍ତି । ୨୭ ।

କି ରୂପେ ସେ ମୁଠାମାନଙ୍କୁ ଛଡ଼ାଇବା
ଆମ୍ଭେ ଗଡ଼ କରି କୁଲାଡ଼ରେ ରହିବା । ୨୮ ।

(୨) ସପ୍ତଦଶଶତ ଏକତ୍ରିଂଶ ବର୍ଷରେ
ଲସ୍କର ତୟାର କରି ପେଶିଲେ ଖରେ । ୨୯ ।

କୁଲାଡ଼ରେ ରଘୁନାଥ ଭଂଜେ ତ ଥିଲେ
ପାଇକ ଯେ ଥିଲେ ତାଙ୍କୁ ଘେନି ଜୁଝିଲେ । ୩୦ ।

---

(୧) ଶ୍ରୀକର ଭଂଜ । (୨) ୧୮୦୯ ଖ୍ରୀଷ୍ଟାବ୍ଦ ।

ରଘୁନାଥ ଭଂଜଙ୍କର ହୃଦରେ ଗୁଳି
ବାଜନ୍ତେ ସେ ଅତି ଶୀଘ୍ରେ ପଡ଼ିଲେ ଢଳି । ୩୧ ।

ଯେତେକ ଲୋକ ଥିଲେ ସେ ଶୀଘ୍ରେ ପଳାଇଲେ
ଶ୍ରୀକର ଭଂଜ ରାଜାଙ୍କୁ ଯାଇ କହିଲେ । ୩୨ ।

ଯେତେଠାରେ ଗଡ଼ ବାନ୍ଧି ଜଗି ସେ ଥିଲେ
ଧନଂଜୟ ଭଞ୍ଜ ରହି ତହିଁ ଯୁଝିଲେ । ୩୩ ।

ତହିଁ ପାଇକେ ସେ ଗଡ଼ମାନଙ୍କେ ଥିଲେ
ସମସ୍ତେ ଜମିଣ ହୃଦେ ବସ୍ତରିଲେ । ୩୪ ।

ଧନଂଜୟ ଭଂଜେ କୁମ୍ଭୂନ ଜମିଦାର
ହୋଇ ରାଜତ୍ୱ କରୁଛନ୍ତି ଗୁମୁହର । ୩୫ ।

ଶ୍ରୀକର ଭଂଜେ ତ ଲୁଚ ମାଳେ ଅଛନ୍ତି
ଆମ୍ଭେମାନେ ରହିଲେ ଏହାଙ୍କର କତି । ୩୬ ।

ନଷ୍ଟେ ଆମ୍ଭମାନଙ୍କର ଜୀବନ ଯିବ
ଆମ୍ଭ ପୁତ୍ର ନାତିକ ଅନ୍ନ ନ ମିଳିବ । ୩୭ ।

ଏତେ ଭାଳି ଗଡ଼ମାନେ ଗୁଡ଼ଣ ଗଲେ
ଧନଞ୍ଜୟ ଭଞ୍ଜ ଲୋକେ ଗଡ଼େ ରହିଲେ । ୩୮ ।

ଶ୍ରୀକର ଭଞ୍ଜ ରାଜା ଏ ଖବର ଶୁଣି
ଏ ଅନ୍ତରେ ହୃଦୟେ କଲେ ଭଳେଣି । ୩୯ ।

ଆମ୍ଭ ଜୀବନ ବୃତ୍ତି କ ବସ୍ତରଲେ
କୁମ୍ଭୂନ ଘର ପାଅମୁଠା ଦେଇଥିଲେ । ୪୦ ।

ପୁତ୍ର ହୋଇକର ଆମ୍ଭ ଘାତ ବସ୍ତର
ଏହି ରୂପେ କଲେଣି ତ ଆମ୍ଭେ କ କର । ୪୧ ।

ଏଠାରେ ରହି ଜଳ ସ୍ମରଣ କରିବା
ଉଚିତ ନୋହେ ତୀର୍ଥ କରିବାକୁ ଯିବା । ୪୨ ।

ଏତେ ଭାଳି କୁଟୁମ୍ବକୁ ଗାଲେଖ ରଖି
ଗମନକୁ କଲେ ନୃପ ହୋଇଣ ଦୁଃଖୀ । ୪୩ ।

ଏ ଚରିତ ଧନଞ୍ଜୟ ଭଞ୍ଜେ ତା ଜାଣି
ତାଲୁକା ଯାକରେ ଅଧିକାରକୁ ପୁଣି । ୪୪ ।

କରି କୁଲଡ଼ଠାରେ କୁଟୁମ୍ବକୁ ରଖିଲେ
ଗଡ଼ମାନ ଦୃଢ଼ରେ କରି ବାନ୍ଧିଲେ । ୪୫ ।

ରଙ୍ଗପୁର ରାଉତ କନ୍ୟାଙ୍କ ଗର୍ଭରେ
କୁମର ଜନମ ହେଲେ ସୁନ୍ଦର ନରେ । ୪୬ ।

କାଠିଙ୍ଗାର ଏକ କନ୍ୟା ରଖି ତ ଥିଲେ
ସୁଆଗି ମହାଦେଈ ନାମ ତାଙ୍କୁ ଦେଲେ । ୪୭ ।

ତାଙ୍କଠାରୁ ତିନି କନ୍ୟା ଝିଅ ଜନ୍ମିଲେ
କୋଠ ଲୋକଠାରୁ ପୁଅ ଝିଅ ହିଁ ହେଲେ । ୪୮ ।

ଅନାମ ଭଞ୍ଜ ବୋଲି ଅନ୍ତର ସୁତ
ଧନଞ୍ଜୟ ଭଂଜଙ୍କର ହୋଇଲେ ଜାତ । ୪୯ ।

ଏହି ରୂପେ କେତେ ଦିନ ଗଲାଟି ବହି
ଏଣିକି ତା ଶୁଣ ଜନେ ମନକୁ ଦେଇ । ୫୦ ।

ଧନଂଜୟ ଭଂଜଙ୍କର ମୋହ ହୋଇଲା
ଦୁଃମାର୍ଗମାନ ଯେ ମାନସେ ପ୍ରବର୍ତ୍ତିଲା । ୫୧ ।

ବହୁତ ଜାତରୁ ସ୍ତ୍ରୀମାନ ଆଣିଲେ
ଯତ୍ନ ବଡ଼ କରି ନହରରେ ରଖିଲେ । ୫୨ ।

ଶଙ୍କାଶତ ଆମୁଆଦମାନ ଭକ୍ଷିଲେ
ଦେହଜ୍ଞାନ ଲୋପ ହେଲା ଏଣୁଟି ଭଲେ । ୫୩ ।

ତାଲୁକାରେ ଦ୍ରବ୍ୟ ଥିବା ଜନମାନଙ୍କୁ
ବନ୍ଦି କରି ଆଣିଲେ ତାହାଙ୍କ ଧନକୁ । ୫୪ ।

ବ୍ରାହ୍ମଣ ବୈଷ୍ଣବ ବୋଲି ନ ବିଗ୍ଭରିଲେ
ତାଙ୍କ ଘରେ ଥିବା ଧନ ଘେନି ଆଣିଲେ । ୫୫ ।

ଏହି ରୂପେ ବହୁତ ଅନ୍ୟାୟେ ପ୍ରବର୍ତ୍ତି
କାଳ ନେଲେ ଧନଂଜୟ ଭଂଜ ନୃପତି । ୫୬ ।

କୁମ୍ଭୁନ କିସ୍ତି ବାଇଦାରେ ନ ଦେଲେ
ଅମିନ ରାଜ୍ୟରେ ଆସି ବସନ୍ତେ ଭଲେ । ୫୭ ।

ଅମିନ ପାଇକମାନଙ୍କର ବର୍ତ୍ତନ
ଲେଖା କରି ନଅନ୍ତୁ ହୋନ୍ତେ ସେତେ ଦିନ । ୫୮ ।

ଘଣ୍ଟଶୋଦାରମାନେ ଆସି ବସନ୍ତ
ଦାରୁଗାମାନେ ରାଜ୍ୟରେ ନରତେ ଥାନ୍ତି । ୫୯ ।
ଏହାଙ୍କର ଆଚରଣ ଜାଣି ସାହେବ
ନୂ ଆଗ୍ରାମରେ କୁମ୍ପୁନି ରଖିଲେ ଜବ । ୬୦ ।
ପଶ୍ଚିମ ହାଇଣି କେତେ ଲୋକ ଯେ ଗଲେ
ସାହେବଙ୍କଠାରେ ଯାଇ ଫିରାଦ କଲେ । ୬୧ ।
ଅଶ୍ୱ କଣ୍ଠ ବିକବାକୁ ମୁସଲମାନ
ମାନେ ଆସନ୍ତେ ରଖନ୍ତି ନୃପ ବହନ । ୬୨ ।
ନାନା ଜାତି ଥାନ ମାନ ଜନେ ଆଣନ୍ତି
ଟଙ୍କା ନଦେଇ ସେ ଥାନ ରଖନ୍ତି । ୬୩ ।
ଟଙ୍କା ନ ଦିଅନ୍ତେ ସଉଦାକାରମାନେ
ଫିରାଦ କରନ୍ତି ସାହେବ ସନ୍ନିଧାନେ । ୬୪ ।
ବିଦେଶୀ ଲୋକଙ୍କୁ ନଉକର ରଖନ୍ତି
ବର୍ତ୍ତନ ନ ଦ୍ୟନ୍ତେ ସେ ଫିରାଦ କରନ୍ତି । ୬୫ ।
ଜଜ୍ ସାହେବ ଶୁଣି ତା ଯାହା ଲେଖନ୍ତି
ଧନଞ୍ଜୟ ଭଞ୍ଜ ରାଜା ତା ନ ମାନନ୍ତି । ୬୬ ।
ଏହି ରୂପେ ନିତି ରାଜାଙ୍କର ନାମରେ
ଫିରାଦ ପଡ଼ିଲା ଜଜ୍ ସାହେବଠାରେ । ୬୭ ।
ଏହି ରୂପେ କେତେ ସମ୍ବତ୍ସର ଯେ ଗଲା
ରାଜାଙ୍କର ନାମରେ ଫିରାଦ ପଡ଼ିଲା । ୬୮ ।
ମାଳକଣ୍ଠ ରାଯ୍‌ଗୁରୁ ନାମେ ବ୍ରାହ୍ମଣ
ସର୍ବଙ୍କ ବିଦ୍ୟାରେ ସେ ଅଟନ୍ତି ନିପୁଣ । ୬୯ ।
ଚୋର ହୋଇଯିବା ପଦାର୍ଥ ସେ କହଇ
ଥିବା ସ୍ଥାନ ଯାଇକରି ଦିଏ ଦେଖାଇ । ୭୦ ।
ଖେମଣ୍ଡିରେ ଗୃହ ତାର ବୋଲି ଶୁଣିଲେ
ଡକାଇ ଆଣ ବୋଲି ଆମ୍ଭଙ୍କୁ କହିଲେ । ୭୧ ।
ଆଦର କରିଣ ବସାଦେଇ କରି ରଖିଲେ
ତାହାଠାରୁ କଉଁ କଉଁ ମନ୍ତ୍ର ଶିଖିଲେ । ୭୨ ।

ବାତୁଳ ପରି ତାଙ୍କ ଆଚରଣ ହେଲା
ଭୋଜନ ଶୟନ ଆଦି କିଛି ନୋହିଲା । ୭୩ ।

ନଅର ଭିତରୁ ତାହାଙ୍କର ଜେ ଧନ
ଗୋଟିଏ ଗଲା ବୋଲି କ୍ରୋଧେ ହେଲେ ଅଜ୍ଞାନ । ୭୪ ।

ପାଟ ମହାଦେଇଙ୍କ ଆଦି ସବୁଙ୍କୁ ଧରି
ସାଙ୍କୋଳି ଦେଇ ରଖିଲେ ସେ ବନ୍ଦୀ କରି । ୭୫ ।

ପୁଅ ବଳଭଦ୍ର ଭଞ୍ଜ ତାଙ୍କୁ ସାଙ୍କୋଳି
ଦେଲେ ଆଉ ଥିଲେ ଯେତେ କିଛି ନ ଭାଳି । ୭୬ ।

ଭିତରେ ମେ ସାତକୋଡ଼ି ବନ୍ଧୁଆ ହେଲେ
ବାହାରେ ଗୃହଶଣ୍ଡ ବନ୍ଧୁଆ ରଖିଲେ । ୭୭ ।

ବାହାର ଲୋକଙ୍କୁ ଦଣ୍ଡମାନ ଦେଇ
ଘରେ ଥିବାର ସର୍ବସ୍ୱ ନେଲେ ବାନ୍ଧି । ୭୮ ।

ଦସ୍ଯୁ ଗନ୍ଧାମୃତ ବୋଲି ଏକ ନମନ୍ତ୍ରା
ରଘୁ ମତ୍ତଗଜ ବୋଲି ତାହାର ଭ୍ରାତା । ୭୯ ।

ଏ ଦୁଇଙ୍କି ସାଙ୍କୋଳି ଦେଇଣ ରଖିଲେ
କୃଷ୍ଣମ୍ଭଙ୍କୁ ବାରୁ ଦ୍ୱାରେ ସେ ବନ୍ଦୀ କଲେ । ୮୦ ।

ଶ୍ରୀକର ଭଞ୍ଜଙ୍କ ପାଟ ମହାଦେଈଙ୍କି
ଏ ବାହାରେ ମାତ ଆନ ମହାଦେଈଙ୍କି । ୮୧ ।

ସାଙ୍କୋଳି ଦେଇଣ ସମସ୍ତଙ୍କୁ ରଖିଲେ
ଖାଇବାକୁ ଅନ୍ନଜଳ ମାନ ନ ଦେଲେ । ୮୨ ।

ଦସ୍ଯୁ ଗନ୍ଧାମୃତ ଯେ ବନ୍ଦୀରୁ ପଳାଇ
ଗଞ୍ଜାମରେ ପ୍ରବେଶ ହେଲା ପୁଣି ଯାଇ । ୮୩ ।

ସାହେବ ହଜୁରେ ଯାଇ ଫିରାଦ କଲା
ସମସ୍ତଙ୍କୁ ବନ୍ଦୀ ରଖିବାର କହିଲା । ୮୪ ।

ସାହେବ ଶୁଣନ୍ତେ ମନେ କ୍ରୋଧ ହୋଇଲେ
ଦାରୁଗାଠାରେ ଦାରୁଗାଠାରେ ରପଟ ଲେଖିଲେ । ୮୫ ।

ଆମ୍ଭଙ୍କୁ ନ ମାନି ନାନା ଅନ୍ୟାୟ କଲେ
ବହୁତ ଲୋକଙ୍କୁ ଜାଣି ବନ୍ଦୀ ସେ କଲେ । ୮୬ ।

ସାହେବ ଶୁଣି ଲେଖିଲେ ଚେନାପାଠଣା
ଗୌନରମେଣ୍ଟକୁ ସବୁ ହେଲା ଜଣା । ୮୭ ।

ସ ହେବ ତରଫ ଲୋକଙ୍କୁ କୁଲଡ଼ଙ୍କୁ
ନ ଗୁଡ଼ିଣ ବନ୍ଦୀ କଲେ ବେନ ଦ୍ୱାରକୁ । ୮୮

ସାହେବଙ୍କଠାରୁ ଯେ ପାଇକ ଯାନ୍ତି
ବେଡାର ବଣିଆପଲ୍ଲୀଠାରୁ ଫେରନ୍ତି । ୮୯ ।

ନୃଆଗ୍ରାମଠାରେ ବେନ କୁମ୍ଭୂନ ଥାନ୍ତି
ଯେ ଆସନ୍ତି ଦ୍ୱାରଠାରୁ ସେ ବାହୁଡ଼ନ୍ତି । ୯୦

ତାଲୁକାରେ ଧନବନ୍ତ ଲୋକେ ତ ଥିଲେ
ବ୍ରାହ୍ମଣ ବୈଷ୍ଣବ ଆଦ ବନ୍ଦୀ ରଖିଲେ । ୯୧ ।

ଦଣ୍ଡଦେଇ ତାଙ୍କ ଘରେ ଥିବାର ଧନ
ଆଣନ୍ତି ସେ ଧନଞ୍ଜୟ ଭଞ୍ଜ ରାଜନ । ୯୨ ।

ଯା ଘରେ ସୁନ୍ଦରୀ ସ୍ତ୍ରିରି ମାନେ ତ ଥିଲେ
ବଳାତ୍କାର କରି ତାକୁ ଘେନ ଆସିଲେ । ୯୩ ।

ଫିରାଦ କଲେ ସାହେବଙ୍କ ନ ମାନିଲେ
ଯେ ଆସିଲେ ଦ୍ୱାରଠାରୁ ବାହୁଡ଼ି ଗଲେ । ୯୪ ।

ନାନା ଅନ୍ୟାୟମାନଙ୍କରେ ସେ ପ୍ରବର୍ତ୍ତି
ବାତୁଳ ଜନ ପରାଏ ହେଲେ ନୃପତି । ୯୫ ।

ଦୁର୍ଗାପ୍ରସାଦରେ ଘର ତୟାର କଲେ
ଉଦୟଗିରି ଗଡ଼କୁ ଦୃଢ଼େ ବାନ୍ଧିଲେ । ୯୬ ।

ମାଳ ବଷୋଈ ଦୋରାକୁ ବନ୍ଦୀ ରଖିଲେ
କୁଟୁମ୍ବ ତା ଧରି ଆଣି ରଖିଲେ ଭଲେ । ୯୭ ।

କେଉଝର ବଷୋଈ ଜୟସିଂହକୁ ଆଣି
ବନ୍ଦୀ କରି ରଖିଲେ ଜାଣ ନରମଣି । ୯୮ ।

ମାଳକନ୍ଧ ଦିଗାଳକୁ ମାରିବା ପାଇଁ
ଲସ୍କର ପେଷିଲେ ମାଳ ଦିଗକୁ ନସହି । ୯୯ ।

ଏ ସକାଶୁ ରାଜ୍ୟ ଲୋକ ମାଲୁଆ ଲୋକ
ନରଚେ ରାଜାଙ୍କୁ ହୃଦେ ରଖିଲେ ଦକ । ୧୦୦ ।

ଭଞ୍ଜ ବଂଶ ବଂଶାବଳୀ କଥା ହୋଇଣ
ଥିଲି ଏହା ଶୁଣି ସନ୍ତୋଷର ବ୍ରାହ୍ମଣ । ୧୦୧ ।

ନିତ୍ତ ମୋ ଆଗେ କହଇ ଏହାକୁ ଗୀତ
କରି ଦେଲେ ଭଲ ହେବ ହଜୁର ଚିତ୍ତ । ୧୦୨ ।

ତା ଠାରେ ମୋ ସ୍ନେହ ପୂରିଥାଏ ନିତେ
ଏଣୁ ଗୀତକୁ ରଚିଲି ହରଷିଲି ଯେତେ । ୧୦୩ ।

ଲକ୍ଷ୍ମୀନାରାୟଣ ପାଦ ପଦ୍ମକୁ ଧ୍ୟାୟି
ସୂର୍ଯ୍ୟମଣି ଚ୍ୟାଉ ଏ ଗୀତକୁ କହଇ । ୧୦୪ ।

---

## ତ୍ରୟୋଦଶ ଛାନ୍ଦ

ରାଗ- ବସନ୍ତ ବରାଡ଼ି ]

ଏଥୁ ଅନନ୍ତରେ ଶୁଣ ହେ ସୁଜନେ ଭଞ୍ଜ ରାଜବଂଶ ଚରିତ
ଶ୍ରୀକର ଭଞ୍ଜ ରାଜନ ରାଜ୍ୟ ଛାଡ଼ି ତୀର୍ଥମାନଙ୍କୁ ହେଲେ ଗତ
ସୁଜନେ, କାଶୀ ପ୍ରୟାଗ ତୀର୍ଥ ଗଲେ
ଦ୍ୱାରକାକୁ ଯାଇ ଶାସ୍ତ୍ର ଉକ୍ତରେ କାସ୍ନାନ ଦାନକୁ ଶୀଘ୍ରେ କଲେ । ୧ ।

ସେଠାରୁ ବଦରିକାଶ୍ରମକୁ ଯାଇ ନର ନାରାୟଣ ଦର୍ଶନ
କରି କେତେ ଦିନ ରହି ନାରାୟଣ ସରକୁ କଲେ ସେ ଦର୍ଶନ
ସେଠାରୁ, ବାହୁଡ଼ିଣ ସେ ନୃପବର
ଉତ୍ତର ପଶ୍ଚିମେ ଯେତେ ତୀର୍ଥ ଥିଲେ ସ୍ନାନଦାନ ସାରି ସତ୍ୱର । ୨ ।

ଚେନାପାଟଣାରେ ପରବେଶ ହୋଇ ବସାକରି ତହିଁ ରହିଲେ
ଗୌନରମେଣ୍ଟଙ୍କ କୁମରକୁ ସର୍ପ ଆଘାତ ହୋଇଲାଟି ଭଲେ
ସୁଜନେ, କେତେ ପ୍ରୟୋଗ ମାନ କଲେ
ତା ଅଙ୍ଗରୁଁ ବିଷ ନ ଛାଡ଼ିବାରୁଁ ସେ ଜୀବନ ଆଶାକୁ ତେଜିଲେ । ୩ ।

ତାହାଙ୍କ କୁଳରେ ଯେଉଁ ରୂପେ ଥିଲି ସେ ରୂପେ ସାହେବ କରନ୍ତେ
ଶ୍ରୀକର ଭଞ୍ଜ ରାଜନ ଦେହଠାରେ ଶୀଘ୍ରେ ପ୍ରବେଶ ହୁଅନ୍ତେ

ସୁଜନେ, ପିଲକୁ ନୟନେ ଦେଖିଲେ
ଯେ ବିଷୟେ ଏ ତ ଧନ୍ବନ୍ତରୀ ପରି ମନ୍ତ୍ରକୁ ପଢ଼ି ଝାଡ଼ିଦେଲେ । ୪ ।

ନିଦ୍ରାଯିବା ଜନ ପରାଏ ସେ ଉଠି ଚଉଦିଗକୁ ଚାହିଁ ଦେଲା
ଗୌନରମେଣ୍ଟ ଦେଖିବା କ୍ଷଣି ତାଙ୍କ ମୁଖରେ ହାସ ଜାତ ହେଲା
ସୁଜନେ, ଶ୍ରୀକର ଭଞ୍ଜଙ୍କୁ ପୁଚ୍ଛିଲେ
କାହୁଁଠାର ତୁମ୍ଭେ ଏଠାକୁ ଆସିଲ ଆମ୍ଭଙ୍କୁ ସତ୍ୟ କହ ଭଲେ । ୫ ।

ତାହା ଶୁଣି ଭଞ୍ଜ ରାଜନ କହିଲେ ଆମ୍ଭେ ଅଟୁ ଗୁମୁସରର
ଶ୍ରୀକର ଭଞ୍ଜ ବୋଲନ୍ତି ଆମ୍ଭ ନାମ ଜାଣ ହେ ମଣ୍ଡଳେଶ୍ୱର
ସାହେବ, ଆମ କୁମର ଧନଞ୍ଜୟ
ଭଞ୍ଜ ନାମଟି ଅଟଇ ତାହାଙ୍କର ରାଜ୍ୟରେ ବହୁତ ଅନ୍ୟାୟ । ୬ ।

କରିବାରୁ ତାକୁ ଶିକ୍ଷାମାନ ଦେଇ କହିଲୁ ବହୁତ ପ୍ରକାରେ
ଆମ୍ଭ ବଚନ ସେ ନ ଘେନିଣ ଯାଇ ରହିଲେ ସେ ନୂଆଗଡ଼ରେ
ସାହେବ, ସେହି ସମୟେ ଗୁମୁସର
ଠଙ୍କାକୁ ତିନି ଭରଣ ଧାନ ହେଲା ଠଙ୍କା ନ ଦେଖିଲୁ ନେତ୍ରର । ୭ ।

ଏ ସକାଶୁ ଦେନି ସମ୍ବତ୍ସର ଯାଏ ଜମାବନ୍ଦି ଠଙ୍କା ପ୍ରବେଶ
ନୋହିବାରୁ ଆମ୍ଭଠାରେ ଧନଞ୍ଜୟ ଭଞ୍ଜେ ହୋଇ କ୍ରୋଧ ଆବେଶ
ସାହେବ, ବାଣପୁରରେ ତ ରହିଥିଲେ
ସେଠାରୁ ଚୋରମାନଙ୍କୁ ପଠାଇ ପର ରାଜ୍ୟରେ ଲୁଟି କଲେ । ୮ ।

ଗୌନର ସାହେବ ପରବେଶ ହେବାରେ ଦେଖା ହୋଇଲେ ତାଙ୍କଠାରେ
ସେ କହିବାରୁ ଦୁର୍ନୟ ଆଚରଣ କରେପିଣ ସେ ଆମ୍ଭଠାରେ
ସାହେବ, ଦଦାଇ ଏମନ୍ତ ଯେ କଲେ
ଗୌନର ସାହେବଙ୍କୁ ଏହା କହି ଲସ୍କର ଘେନି କ୍ରୋଧେ ଗମିଲେ । ୯ ।

ସାହେବଙ୍କ ସଙ୍ଗେ କି ରୂପେ ଯୁଝିବା ଆମ୍ଭେ ହୃଦେ କରି ବିଚାର
ଦୁର୍ଗାପ୍ରସାଦ ମାନେ ଯାଇ ରହିଲୁ ସେଠାକୁ ଘେନି ଲସକର
ସାହେବ, ଧନଞ୍ଜୟ ଭଞ୍ଜେ ତ ଗଲେ
ମାଳକଣ୍ଠେ ତାହା କି ବିଚାର କରି ଗୁଳୀ କାଣ୍ଡ ଅଧ ମାଇଲେ । ୧୦ ।

ଦୁର୍ଗାପ୍ରସାଦରୁ ଲସ୍କର ବାହୁଡ଼ି ନୂଆଗ୍ରାମେ ହେଲେ ପ୍ରବେଶ
ଗୌନ-ସାହେବଙ୍କ ଠାକୁ ଅର୍ଜି ଲେଖି ପଠିଥିଲୁ ଆମ୍ଭ ଦାସ
ସୁଜନେ, ଶୁଣି ତାହା ଗୌନ ସାହେବ
ନୂଆଗ୍ରାମଠାରୁ ଭେଟକେର ବୋଲି ଆମ୍ଭଠାକୁ ଲେଖିଲେ ଜବାବ ।୧୧।

ତାହାଙ୍କ ଆଦେଶ ପ୍ରତିପାଳି ଆମ୍ଭେ ରହିଲୁ କୁଲାଡ଼ ଗଡ଼ରେ
ରାଜ୍ୟ ଯାକରେ ସେ ରାଜାଭକ୍ତ କରି ରହି ପୂର୍ଣ୍ଣ ଗୁମୁସରେ
ସାହେବ, ଏ ରୂପେ ପାଞ୍ଚ ସମ୍ବତ୍ସର
ଯାଆନ୍ତେ କୁମ୍ଭୁନି ଭେନି ଧନଞ୍ଜୟ ଭଞ୍ଜ ଆସନ୍ତେ କୁଲାଡ଼ର । ୨ ।

କୁମ୍ଭୁନି ଆମ୍ଭେ ଦେଖି ସେ ଜାଗା ଗୁଡ଼ ମାନକୁ ଶୀଘ୍ରେ ଉଠି ଗଲୁ
ଯଉଁଠାରେ ଆମ୍ଭ ଲୋକମାନେ ଥିଲେ ସେଠାରୁ ତାଙ୍କୁ ଭେନିଗଲୁ
ସାହେବ, ରାଜ୍ୟଯାକ ସେ ଭୋଗ କଲେ
ଆମ୍ଭର ଜୀବନ ବୃତ୍ତି ନିମିତ୍ତରେ କିଛି ହିଁ ଆମ୍ଭଙ୍କୁ ନ ଦେଲେ ।୧୩।

ଆମ୍ଭେ ହୃଦରେ ବିଚାରିଲୁ ସାହେବ ଆମ୍ଭଠାରେ କରି ଦୟାକୁ
ଆମ୍ଭର ଜୀବନ ବୃତ୍ତି ନିମିତ୍ତରେ ଦେଇଥିବା ପାଞ୍ଚ ମୁଠାକୁ
ସାହେବ, ପୁନ ହୋଇ ସେ ଆମ୍ଭ ଘାତ
ବିଚାରିବାରୁ ଗୁମୁସର ରାଜ୍ୟକୁ କରିଦେଲୁ ଶୀଘ୍ରେ ସ୍ୱନ୍ତ ।୧୪।

ଆମ୍ଭେ କୁଟୁମ୍ବକୁ ଗାଲେରୀରେ ରଖି କାଶୀ ପ୍ରୟାଗ ବୁଲି ଗଲୁ
ସେଠାରୁ ଅଯୋଧ୍ୟା ଯାଇ ଦ୍ୱାରକାକୁ ବଦ୍ରିକାଶ୍ରମ ହିଁ ଦେଖିଲୁ
ସାହେବ, ସବୁ ତୀର୍ଥମାନଙ୍କୁ କରି
ପଶ୍ଚିମରେ ଯେତେ ତୀର୍ଥ ଥିଲେ ସ୍ନାନ କରି ଆଇଲୁ ଶୀଘ୍ରେ ଫେରି ।୧୫।

ଶ୍ରୀରାମନାଥଙ୍କୁ ଦରଶନ କରି ସେତୁବନ୍ଧରେ ସ୍ନାନ କଲୁ
ଆଉଠାରେ ଆମ୍ଭ ଗତି ନାହିଁ ବୋଲି ତୁମ୍ଭ ହଜୁରକୁ ଆସିଲୁ
ସାହେବ, ତାହା ଶୁଣି ଶୀଘ୍ରେ କହିଲେ
ତୁମ୍ଭର କି ଇଚ୍ଛା ଅଛି ଏବେ ଆମ୍ଭଠାରେ କହ ବୋଲି ବୋଇଲେ ।୧୬।

ଆମ୍ଭେ କହିଲୁ ରାଜ୍ୟରେ ତ ଆମ୍ଭର ସ୍ୱନ୍ତ ବଳତ୍ତି ବିନ୍ନନନ୍ତି
ଆମ୍ଭର ସେଥିରେ ଇଚ୍ଛା ନାହିଁ ଆମ୍ଭେ ଭ୍ରମଣ କରୁଥିବୁ ଖିଞ୍ଚି

ସାହେବ, କଉଁଠାରେ ଆମ୍ଭର ଭୟ
ନୋହିଲା ପତ୍ର ଲେଖିଦେଲେ ଆମ୍ଭଙ୍କୁ ବୁଲିବୁ ହୋଇଣ ନିର୍ଭୟ । ୧୭ ।

ସାହେବ ସେଠାରୁ ଅନୁଗ୍ରହ କରି ଅତି ଶୀଘ୍ରରେ ଲେଖିଦେଲେ
ଲେଖା ଘେନି ବୈଷ୍ଣବ ରୂପେ ଏକା ଏହି ପ୍ରଦେଶକୁ ଆସିଲେ
ସୁଜନେ, ସୁରଙ୍ଗିରେ ଆସି ରହିଲେ
ସୁରଙ୍ଗି ହରିଚନ୍ଦନେ ଜାଣି ତାଙ୍କ ଭଣଜା ଅଟନ୍ତି ସେ ଭଲେ । ୧୮ ।

ସେଠାରେ ଦୁଇ ମାସ ରହି ଗଞ୍ଜାମଠାରେ ପ୍ରବେଶ ଆସି ହେଲେ
କଲକଟର ଜଡ୍ଜ ସାହେବଙ୍କ ହଜୁରରେ ସେ ଦେଖା ହୋଇଲେ
ସୁଜନେ, ସାହେବଙ୍କୁ ସବୁ କହିଲେ
କିଛି ଦିନ ତୁମ୍ଭେ ଏହିଠାରେ ଥାଅ ବୋଲି ହୁକୁମକୁ ସେ ଦେଲେ । ୧୯ ।

ସେଠାରେ ଚାରିମାସ ରହଣି କରି ସାହେବଙ୍କୁ ପୁଣି କହିଲେ
ଆମ୍ଭର ଯେ ଖର୍ଚ୍ଚ ଥିଲା ତା ସରିଲା ଆମ୍ଭେ ଏଠାରୁ ଯିବୁ ଭଲେ
ସାହେବ, ଜମିଦାର ସ୍ଥାନକୁ ଯାଇ
ଖର୍ଚ୍ଚ ଉଠାଣ କରି ବେନି ମାସକୁ ଆସିବୁ ବୋଲି ଏ କହି । ୨୦ ।

ମେଲଣି କରି ବାହାରି ନୂଆଗଡ଼ ଯାଇ ମାନ୍ଧାତାଙ୍କୁ ଦେଖା ଦେଲେ
ସେଠାରୁ ଚଣ୍ଡ୍ରପଡ଼ା ଯାଇ ସେ ଦଶପଲ୍ଲା ବଉଦରେ ରହିଲେ
ସୁଜନେ, ସେଠାରୁ କେନ୍ଦୁଝର ଗଲେ
ଗୁମୁସରରେ ଧନଞ୍ଜୟ ଭଞ୍ଜ ସେ ଭେଟି କରିଥିଲେ ଭଲେ । ୨୧ ।

ଚଳ ଗୁହାରେ ତ ତାଙ୍କର ସମସ୍ତ ଆଚରଣକୁ କହିଥାଇ
ଦାରୁଗା ଟୋଗଦର ରଖିବା ସ୍ଥାନକୁ ପାଇକ ଗଣ ପଠାଇ
ସୁଜନେ, ତାଙ୍କୁ ସେ ସ୍ଥାନକୁ ଘଉଡ଼ିଲେ
ସେମାନେ ଯାଇ କଲକଟର ଜଡ୍ଜ ସାହେବ ଆଗରେ କହିଲେ । ୨୨ ।

ସମ୍ବାଦ ଭରା ହୋଇକରି ଲେଖିଲେ ଗଭନରମେଣ୍ଟଙ୍କ ଠାକୁ
ସେଠାରୁ ଫ୍ଲେଚର୍ ସାହେବ ଆସିଲେ ଅତି ତ୍ୱରାରେ ଗଞ୍ଜାମକୁ
ସୁଜନେ, ଗୋରା ପଟଲମ ସଙ୍ଗରେ
ଲସ୍କର ଥିଲେ ଅତି ଜବେ ଆସିଲେ ଯୁଝିବାକୁ ସେ ଘୁମୁସରରେ । ୨୩ ।

ଧନଞ୍ଜୟ ଭଞ୍ଜେ ଏ ଖବର ଶୁଣି କୁପାଟିକି ବାହାରି ଗଲେ
ବନ୍ଧଆ ଯଜଁମାନେ ଥିଲେ ତାହାଙ୍କୁ ଗାଲେଘରେ ନେଇ ରଖିଲେ
ସୁଜନେ, କେଁରାଣ୍ଡି ଖୋଲରେ ପୁଟଙ୍କୁ
କରି ଅତି ଶୀଘ୍ରେ ସେହିଠାରେ ନେଇ ରଖିଲେ ସବୁ କୁଟୁମ୍ବଙ୍କୁ । ୨୪ ।

ବନ୍ଧଆମାନଙ୍କୁ ଘେନି ଯାଇକରି କେରାଣ୍ଡି ଖୋଲରେ ରଖିଲେ
ରାଜ୍ୟଯାକ କାର୍ଯୀ କରଣ କୁଟୁମ୍ବମାନଙ୍କୁ ସେହିଠାକୁ ନେଲେ
ସୁଜନେ, ଫ୍ଲେଚର ସାହେବ ଲସ୍କର
ଅତି ଭୀର ହୋଇ କରଣ ଶୀଘ୍ରେ ପ୍ରବେଶ ହେଲେ ଗୁମୁସର । ୨୫ ।

ସପ୍ତ ହଜାର ଟଙ୍କା ଦେଇ ଦିବାନ ପଟ୍ଟନାୟକଙ୍କୁ ପେଶିଲେ
ଗୁପ୍ତରେ ପିଣ୍ଡିକି ସନ୍ତୋଷରାୟଙ୍କୁ ତାଙ୍କ ପଛରେ ପଠାଇଲେ
ସେ ଯାଇ, ବାବନପୁରରେ ରହିଲେ
ଟଙ୍କାଠାଏ ଗୁପ୍ତ ରଖାଇ ଦେଇଣ ସାହେବଠାରେ ଦେଖା ଦେଲେ । ୨୬ ।

ରାମକୃଷ୍ଣ ଦୋରା ବହ୍ନାଶି ସିଂହଙ୍କୁ ପୁଣି ନୃପ ପଠନ୍ତେ ପେଶିଲେ
ଦେଖା ହେବାରେ ଏମାନଙ୍କୁ ସାହେବ ବନ୍ଦୀ କରଣ ରଖାଇଲେ
ସାହେବ, ଗାଲେଶ ଯାଇଣ ରହିଲେ
ନୃପ କେରାଣ୍ଡି ଖୋଲର ଜରାଙ୍କ ଘାଟିରେ ପ୍ରବେଶ ହୋଇଲେ । ୨୭ ।

ଫ୍ଲେଚେର ସାହେବ ଲସକର ଘେନି ଗାଲେଶଠାରୁ ଉଠିଗଲେ
ଧନଞ୍ଜୟ ଭଞ୍ଜେ ଥିବାର ସ୍ଥାନକୁ ଯିବାର ଉଦ୍ୟମକୁ କଲେ
ସୁଜନେ, ପୂର୍ବରୁ କନ୍ଧଙ୍କ ସଙ୍ଗରେ
ବିବାଦ କରିଥିଲେ ତେଣୁ ସେ କନ୍ଧେ ବିରାଗ ହୋଇଣ ହୃଦରେ । ୨୮ ।

ପର୍ବତେ ଚଢ଼ାଇ ଧନଞ୍ଜୟ ପାଖରେ ପ୍ରବେଶ ଯାଇ ହେବାକୁ
ଦୁଇ ଜଣ କନ୍ଧ ବାହାରିଲେ ସଙ୍ଗେ ଘେନାଇ ସାହେବ ସୈନ୍ୟଙ୍କୁ
ସୁଜନେ, ନୃପବର ଥିବା ସ୍ଥାନରେ
ବେନି ଘଡ଼ି ବେଳ ସରିକି ପ୍ରବେଶ ହୋଇଲେ ଜରାଙ୍କ ଘାଟିରେ । ୨୯ ।

ଫଟକୁ ଓହ୍ଲାଇବାର ନୃପ ଦେଖି ଅତି ଶୀଘ୍ରରେ ପଳାଇଲେ
ଭିତର ଲୋକରୁ ପଞ୍ଚାଂଶ ଜଣ ଟଙ୍କା ସୁନା ନେଇ ଗମିଲେ
ସୁଜନେ, ଆଉ ଭିତର ଲୋକମାନେ
ସମସ୍ତେ ସେ ସ୍ଥାନେ ରହିଲେ ସେ ନେବନି ଶଠ ହେବେ ବରୁର ମନେ । ୩୦ ।

ପାଇକ ଯେତେ ଥିଲେ ସେହି ସ୍ଥାନରୁ ଅତି ଶୀଘ୍ରରେ ପଳାଇଲେ
ଭଲ ଲୋକ କାର୍ଯୀକରଣ କୁଟୁମ୍ବ ସେହି ସ୍ଥାନରେ ସେ ରହିଲେ
ସୁଜନେ, ସାହେବ ଦେଖି ବନ୍ଧଆଙ୍କୁ
ସାଙ୍କୋଳିମାନଙ୍କୁ ପାଷାଣରେ ଭଙ୍ଗି ଦିଅ ବୋଲି ଦେଲେ ସିଲକୁ । ୩୧ ।

ସେହିରୂପେ ମାଧାଣମାନଙ୍କୁ ଧରି ସାଙ୍କୋଳିମାନ ଭଙ୍ଗି ଦେଲେ
ସାହେବ ପାହାକୁ ସାହା ପଚରିଲେ ସତ୍ୟ କଥା ସର୍ବେ କହିଲେ
ସୁଜନେ, ଚନ୍ଦ୍ର ନାମନ୍ତା କେତେ ଜଣ
ଧନଞ୍ଜୟ ଭଞ୍ଜ ରାଜାଙ୍କର ପକ୍ଷୁ ପାଇ ପ୍ରବେଶ ହେଲେ ଜାଣ । ୩୨ ।

ସେହି ଦିନକ ସେଠାରେ ରହି ସର୍ବେ କେରାଣ୍ଡି ଖୋଲକୁ ଗମିଲେ
ଶଲ୍ଲକାର ଆଦି ଭଲ ଲୋକ ଯେତେ କୁଟୁମ୍ବ ସଙ୍ଗେ ନେଇଗଲେ
ସୁଜନେ, ସେହିଠାରେ ସେ ରାଜ ରହି
କୁପାଟିରେ ଯାଇ ପ୍ରବେଶ ହୋଇଲେ ପଟେଲମ ରାଜ୍ୟ ଲୋକ ହିଁ । ୩୩ ।

କୁପାଟିଠାରୁ ରାଜ୍ୟ ଲୋକମାନଙ୍କୁ ସାହେବ ମେଲାଣିକି ଦେଲେ
ଯେ ଯାହାର ସ୍ଥାନମାନଙ୍କରେ ଯାଇ ସମସ୍ତେ ସୁଖରେ ରହିଲେ
ସୁଜନେ, ସାହେବ ସେଠାରୁ ବାହୁଡ଼ି
ନୂଆଗ୍ରାମ ବେଣିପଲ୍ଲୀରେ ଲସ୍କର ରହିଲେ ହୋଇ ଅତି ଭରି । ୩୪ ।

ପାମ୍ପୁଟ୍ କଲକଟର ସାହେବ ଯେ ପାଇକାପଡ଼ାରେ ପ୍ରବେଶ
ହୋଇ ମୁସ୍ତାଜରମାନଙ୍କୁ ଡ଼ାକିଲେ ନଆଁକ ହେବ ଶୀଘ୍ରେ ଆସ
ସୁଜନେ, ନବାବ ଭିକା ଭଞ୍ଜଙ୍କୁ
ଧନଞ୍ଜୟ ଭଞ୍ଜଙ୍କୁ ଡ଼ାକାଇଲେ ସେ ଆସ ବୋଲି ଆମ୍ଭ ପାଶକୁ । ୩୫ ।

ଧନଞ୍ଜୟ ଭଞ୍ଜେ ହୃଦପୁରେ ଭୂମ୍ୟ ରକ୍ଷାକର ଚନ୍ନୁଁ ଆସିଲେ
ବାଙ୍ଗଣା ଗ୍ରାମଠାରେ ଆସି ପ୍ରବେଶ ହୋନ୍ତେ ସାହେବ ଶୀଘ୍ର ଗଲେ
ସୁଜନେ, ନାରଣ୍ଣ ନାୟୁଡୁ ଦୋ ବାମି
ସାହେବଙ୍କ ସଙ୍ଗେ ଗଲା ସେ ସାହେବଙ୍କୁ ନୃପତି ଦେଖାଇଦେଲେ ଆସି । ୩୬ ।

ପାଇଲପଡ଼ାକୁ ଆସ ଯିବା ବୋଲି ସାହେବ ନୃପଙ୍କୁ ଡାକିଲେ
ଭୋଜନ ଏଠାରେ ସାରି ଯିବୁ ବୋଲି ନୃପ ସାହେବଙ୍କୁ କହିଲେ
ସୁଜନେ, ନାରଣ୍ଣୁ ନାୟୁଡୁଙ୍କୁ ଭାଷ
ସାହେବ କହିଲେ ଏ ରାଜାଙ୍କୁ ଘେନି ତୁମ୍ଭେ ରହଣ ବେଗେ ଆସ । ୩୭ ।

ସାହେବ ଏ ରୂପେ କହିଣ ଶୀଘ୍ରେ ପାଇଲପଡ଼ାକୁ ଆସିଲେ
ଧନଂଜୟ ଭଂଜେ ଯୋଗାଣ ଖନ୍ଦାକୁ ସେହିଠାରୁ ଯେ ଶୀଘ୍ରେ ଗଲେ
ସୁଜନେ, ହୃଦପୁରେ ନୃପ ଭାଳିଲେ
କି ରୂପେ ଏଠାରୁ ପଳାଇଲେ ଆମ୍ଭ ପ୍ରାଣ ରହିବଟି ଯେ ଭଲେ । ୩୮ ।

ବ୍ରାହ୍ମଣ ଗୋପବନ୍ଧୁଙ୍କୁ ଡାକିକରି କହିଲେ ମୋ ଭଂଜ ରାଜନ
ସୁରେଖା ଘୋଡ଼ାକୁ ତୟାରିକୁ କରି ଏଠାକୁ ଶୀଘ୍ରେ ଘେନି ଆଣ
ସୁଜନେ, ସେଠାରୁ ଗୋପବନ୍ଧୁ ଗଲା
ସୁରେଖା ଘୋଡ଼ାକୁ ତୟାର କରିଣ ସେହିଠାକୁ ଶୀଘ୍ରେ ଆଣିଲା । ୩୯ ।

ଧନଂଜୟ ଭଂଜେ ଯୋଗାଣ ସାରିଣ ଭଲ ହୋଇ ଯେବେ ଆସିଲେ
ଘୋଡ଼ାରେ ବସି ବାହାରି ଯିବା ବୋଲି ଭାବି ଅଶ୍ୱ ପାଖକୁ ଗଲେ
ସୁଜନେ, ଅଶ୍ୱେ ବସି ବାହାରନ୍ତେ
ନାରଣ୍ଣୁ ନାୟୁଡୁ ଧାଇଁ ଯାଇ ଅଶ୍ୱ ବାଗକୁ ଧଇଲା ତ୍ୱରିତେ । ୪୦ ।

ରାଜାଙ୍କୁ ପାଲିଙ୍କିରେ ଶୀଘ୍ରେ ବସାଇ ପାଇଲପଡ଼ାକୁ ଆସିଲେ
ସାହେବ ଆଗରେ ରାଜାଙ୍କର ଆଚରଣକୁ ଶୀଘ୍ରରେ କହିଲେ
ସୁଜନେ, ବେଣିପଲ୍ଲୀ ପଠିଆଇ
ନୃପଠାରେ (୧) ଜଇନାତ କରାଇଲେ କୁମ୍ପାନି ଗୋଟିଏ ଅଣାଇ । ୪୧ ।

---

(୧) ଉପସ୍ଥିତ ।

ପାଇଲାଓଡ଼ାରେ ହେନ୍ସି ରାଜ ଧନଞ୍ଜୟ ଭଞ୍ଜଙ୍କୁ ରଖାଇଲେ
ସାଥିରେ ଗୋଟିଏ କୁମ୍ପୁନ ଦେଇଣ ଗଞ୍ଜାମକୁ ଶୀଘ୍ରେ ପେଷିଲେ
ସୁଜନେ, ଜଡ୍‌ଜଙ୍କଠାକୁ ଲେଖିଲେ
ଭଞ୍ଜେ ପଳାଇଥିଲେ ଧରି ଆଣିଲୁ ଏହି ରୂପରେ ଖ୍ୟାତ କଲେ ।୪୨।

ଗୌନରମେଣ୍ଟଙ୍କ ସରକ ଲେଖିଲେ ଧନଞ୍ଜୟ ଭଞ୍ଜଙ୍କୁ ଆମ୍ଭେ
ପଳାଉଥିଲେ ଧରି ଯେବେ ଆଣିଲୁ ବୋଲି କଲକଟର ଦମ୍ଭେ
ସୁଜନେ, ଦଶ ହଜାର ରୁପିଆକୁ
ଗୌନରମେଣ୍ଟ ଯେ ଇନାମ କରିଲେ କଲକଟର ସାହେବଙ୍କୁ ।୪୩।

(୨) ସପ୍ତଦଶଶତ ଊନଚତ୍ୱାରିଂଶ ଶକାବ୍ଦେ ଭଞ୍ଜ ରାଜାଙ୍କର
ଚତୁର୍ଦ୍ଦଶ ବର୍ଷ ସୁଖରେ ରାଜତ୍ୱ ଶେଷ ହେଲା ହେ ଧୀର ନର
ସୁଜନେ, ସେ ଉତ୍ତାରୁ ହେଲା ଅମାନୀ
ଅମିନ ଅଚ୍ୟୁତରାମ ହେଲା ବୁଝିଲା ଏ ଗୁମୁସର ଅବନ ।୪୪।

ଭଞ୍ଜ ରାଜାଙ୍କୁ ଗଂଜାମ ଜଇଲରେ କୁମ୍ପୁନ ତଇନାତ କରି
ରଖି ଶ୍ରୀକର ଭଂଜଙ୍କଠାକୁ ଦୂତ ପେଷିଲେ ଶୀଘ୍ରରେ ବହୁରି
ସୁଜନେ, କେନ୍ଦୁଝରରେ ସେ ତ ଥିଲେ
ଦୂତ ଯିବାକ୍ଷଣି ତୋରା ହୋଇ ଶୀଘ୍ରେ ଗଂଜାମକୁ ସେ ତ ଆସିଲେ ।୪୫।

ତାଙ୍କୁ ମଧ୍ୟ ସେ ଜଇଲରେ ରଖିଲେ ଏକ ଘର କରି ତୟାର
ଗୌନରମେଣ୍ଟଙ୍କଠାକୁ ଅର୍ଜି ଲେଖି ପେଷିଲେ ଜଡ୍‌ଜ କୁମର
ସୁଜନେ, କଲକଟରଙ୍କୁ ଡ଼କାଇଲେ
ଜଡ୍‌ଜ ଭଣ୍ଟୁକାକ ସାହେବଙ୍କୁ ଶୀଘ୍ରେ ଡ଼କାଇଣ ସେ ଏଥୁ ନେଲେ ।୪୬।

ଫ୍ଲେଚର୍ ସାହେବଙ୍କୁ ମଧ୍ୟ ଡ଼କାଇ ଚନାପାଟଣାକୁ ସେ ନେଲେ
ନୃପତି ବହୁ ବମର୍ଷ କରାଇ ଟୋପି ବେତକୁ ଛଡ଼ାଇଲେ
ସୁଜନେ, କଲକଟରଙ୍କ ବଦଳରେ
କ୍ୟାମ୍ବଲେଟ ସାହେବଙ୍କୁ ସେ ପେଷିଲେ ପୁଣି ଜଡ୍‌ଜ ବଦଳରେ ।୪୭।

---

(୨) ୧୮୧୭ ଖ୍ରୀଷ୍ଟାବ୍ଦ ।

ଙ୍ଗ୍ରାବରସୁ ସାହେବଙ୍କୁ ପଠାଇଲେ ସେ ଆସି ସମସ୍ତଙ୍କୁ ବୁଝିଲେ
ନୃପଙ୍କ ଭିତରି ଲୋକ ଯେତେ କୁମ୍ଭୀନରେଟି ଧରାପଡ଼ିଲେ
ସୁଜନେ, ସେମାନେ ଜଜ୍‌ଙ୍କ ଆଗରେ
କହିଲେ ମା'ଙ୍କୁ ପାଠ ମହାଦେଈ ଆଜ୍ଞାକୁ ମାରିଲେ କ୍ରୋଧରେ । ୪୮ ।

ଆଉ ଯେତେ କର୍ମ ହୋଇଅଛୁ ଜାଣ କହିଲେ କି ତାହା ସରିବ
ଆମ୍ଭ କପାଳରେ ଅର୍ଜିଥିବା ଭୋଗ କଲୁ ହେ ଜଜ୍‌ଙ୍କ ସାହେବ
ସୁଜନେ, ପୁଅ ବଳଭଦ୍ର ଭଂଜଙ୍କୁ
ପ୍ରାଣବାଧ କରି କୂପ ଖୋଳି ପୋତାଇଲେ ପିଲାସ୍ତ୍ରିଶି ଚୟଙ୍କୁ । ୪୯ ।

ପୋତିବାର କୂପ ଆମ୍ଭଙ୍କୁ ଦେଖାଅ ବୋଲନ୍ତି ସାହେବ କହିଲେ
କୁଲଡ଼ ଗଲେ ଦେଖାଇବୁ ବୋଲନ୍ତେ ସାହେବ ଶୀଘ୍ରେ ବାହାରିଲେ
ସୁଜନେ, ସେ ସ୍ତ୍ରିଶିମାନେ ସଙ୍ଗେ ଗଲେ
କୁଲଡ଼ରେ ପରବେଶ ହୋଇ ସେହୁ କୂପମାନଙ୍କୁ ଦେଖାଇଲେ । ୫୦ ।

ମୂଲିଆ ଲଗାଇ ଖୋଳାଇଲେ କୂପୁ ଅସ୍ଥି ବିଶେଷ ବାହାରିଲା
ଶିର ହସ୍ତ ପାଦ ହୃଦ ଆଦି ଅସ୍ଥି ଭିନ୍ନ ଭିନ୍ନରେ ଜଣାଗଲା
ସୁଜନେ, ସାହେବ ସେ ଅସ୍ଥିମାନଙ୍କୁ
ବାହାର କରି ଭରିରେ ଗମନ ସେ କଲେଟି ଜାଣ ଗଞ୍ଜାମକୁ । ୫୧ ।

ଦଇବ ବଶେ ଗଞ୍ଜାମରେ ମରକ ଭୟ ଉପସ୍ଥିତ ହୋଇଲେ
କମ୍ପ ଜ୍ୱର ବାନ୍ତି ପ୍ରଭୃତି ହେବାରେ ବହୁ ଜନ ବାଧ ହେଲେ
ସୁଜନେ, ସର୍ବେ ସେଠାରୁ ପଳାଇଲେ
ସାହେବ କଚେରି ଭାଙ୍ଗି ଭାବପୁରଠାରେ କଚେରିକୁ ଆସିଲେ । ୫୨ ।

ଶ୍ରୀକର ଭଞ୍ଜ ଧନଞ୍ଜୟ ଭଞ୍ଜଙ୍କୁ ସେହିଠାରୁ ଘେନ ଆସିଲେ
ଭାବପୁର ଘର ଚମ୍ପାରଙ୍କୁ କରି କୁମ୍ଭୀନ ତେନାତେ ରଖିଲେ
ସୁଜନେ, ଧନଞ୍ଜୟ ଭଞ୍ଜମାନଙ୍କୁ
ଲୋକ ପଠାଇଲେ ଫିଭୁରକୁ କରି ଏଥୁ ହେବ ଆମ୍ଭ ଶ୍ରେୟଙ୍କୁ । ୫୩ ।

ମାନ ଲୋକେ ଜ୍ଞାନ ମଢନାୟକଙ୍କୁ ରତନ ପ୍ରଧାନଙ୍କୁ ପୁଣି
କୁଲଡ଼ଗଡ଼ରେ ଜଲୁ ଣ୍ଡି ଗ୍ରାମରେ ଦୁହିଁଙ୍କ ଫକାଇଲେ ହାଣି
ସୁଜନେ, ରାଜ୍ୟପାଇକ ଫିଭୁରଙ୍କୁ କଲେ
ଗ୍ରାମ ପୋଡ଼ ଦେଇ ମଇଁଷି ପୋତ୍ରୁଅ ବଳଦ ଗାଇ ଲୁଟି ନେଲେ । ୫୪ ।

ଗୁଡ଼ବଦନରେ ରାଜ୍ୟପାଇକ ପୋଡ଼ି ଦେଲେ କଳାସ୍ତମ୍ଭ ମାତ୍ର ରହିଲା
ଗ୍ରାମରେ ଗୋଟିଏ ନ ରହିଲେ ଧନଧାନ୍ୟାଦି ମାନ ଲୁଟି ହେଲା
ସୁଜନେ, ସାହେବଠାରେ ଏ ଖବର
ହୁଅନ୍ତେ ଅମିନଠାରୁ ସେ ଲେଖିଲେ ବୁଝି ଲେଖିବ ଆମ୍ଭଠାର । ୫୫ ।

ଫିଭୁର କ ରୂପେ ରାଜ୍ୟ ଜାତ ହେଲା ଅମିନ ତାହା ବୁଝି କରି
ସାହେବଠାରୁ ଲେଖିଲା ଧନଞ୍ଜୟ ଭଞ୍ଜଙ୍କ ସ୍ୱଳାଣ୍ଡୁ ଏପରି
ହୋଇଲା, ମାନଙ୍କରଙ୍କୁ ସେ ଲେଖିଲେ
ମାନପାଇକ କହେ ରାଜ୍ୟ ଲୁଟି କରି ଧନଧାନ୍ୟାଦି ପୋଡ଼ିଦେଲେ । ୫୬ ।

ନୃପଙ୍କ ସମ୍ବନ୍ଧ ପୁନ ବଳଭଦ୍ର ହେଉଅଛନ୍ତି ଏ ମାନରେ
ତାହାଙ୍କ ବୋଲରେ ଯେ ଯାହା କଲୁ ବୋଲି କହିଲେ ସମସ୍ତଙ୍କଠାରେ
ସୁଜନେ, ସାହେବ ଏହି ରୂପେ ଶୁଣି
କୁମ୍ଭୁନ ଦେଇ ଧନଞ୍ଜୟ ଭଞ୍ଜଙ୍କୁ ପେଷିଲେ (୧) ଦକ୍ଷିଣକୁ ପୁଣି । ୫୭ ।

କୁଟୁମ୍ବମାନେ ଧରାକୋଟେ ଥିଲେ ତାଙ୍କୁ ସେଠାକୁ ନେଇଥିଲେ
ସମସ୍ତଙ୍କୁ ଧରି ସଙ୍ଗେ ଭଞ୍ଜ ରାଜା ଖେଦ ମାନସେ ବାହାରିଲେ
ବକ୍ସୁକାଞ୍ଚରେ ନେଇ ତାଙ୍କୁ
ରଖାଇଲେ କୁମ୍ଭୁନ ତଇନାତରେ ଆବର ସବ କୁଟୁମ୍ବଙ୍କୁ । ୫୮ ।

ଏ ଭିତରେ ବାଳପଦ୍ର ବକ୍ସୁ ଚନ୍ଦ୍ର ଆଇଲପଡ଼ା ଅଣଗିରି
ଏ ଗୁଡ଼ି ମୁଟାକୁ ପଧାନଙ୍କ ନାମେ ଆଜ୍ଞା ଗୁଡ଼ାଏ ଲେଖି କରି
ପଠାଇଲେ, ରଘୁନାଥ ମହାପାତ୍ରଙ୍କୁ
ସେ ଆସି ସମସ୍ତ ପଧାନଙ୍କୁ ଦେବା ଅମିନ ଶୁଣି ସେ କଥାକୁ । ୫୯ ।

---

(୧) ଧନଞ୍ଜୟ ଭଞ୍ଜଙ୍କୁ ଗଞ୍ଜାମ ଜେଲରୁ ଦକ୍ଷିଣରେ ଥିବା ଚେଙ୍ଗଲପୁଟ୍ ଜେଲ୍‌କୁ ପଠାଗଲା ।

ଧରାଇ ନେଇଣ ନମିନା ଗ୍ରାମଠାରେ କଏଦରେ ନମ ରଖାଇଲେ
ତା ଶୁଣି ବୀରବର ପାତ୍ର ଅମାତ୍ୟ ଯୋଗୀନାଥ ଭଞ୍ଜ ଯେ ଥିଲେ
ସେ ବାସ, ଘୁଞ୍ଚଣ ନଲ୍ଲିକ ଧରାପଡ଼ି
ବନ୍ଦୀରୁ ତାକୁ ଘେନ ଯାଇ ସେ ପାଖ ଗ୍ରାମମାନ ଦେଲେ ପୋଡ଼ାଇ ।୬୦।

ଆମ୍ଭେ ଯାଇ ନବଦୁର୍ଗରେ ରହିଲୁ ଅ.ଉମାନେ କେ କାହିଁଠାରେ
ରହିଲେ ଅମିନଗଣଙ୍କୁ ଖଆସିତକ୍ତ କଲେ ଭେଟମାଙ୍ଗିରେ
ସୁଜନେ, ଏ ରୂପେ କେତେ ଦିନ ଗଲା
କୁମ୍ପ ନମାନେ ମାଳକୁ ଯାଆନ୍ତେ ସେ ମାର୍ଗମାନଙ୍କ ଯୁଦ୍ଧ ହେଲା ।୬୧।

ବଣ ପର୍ବତରେ ରହି ଗୁଳକାଣ୍ଡ ମାରି କନ୍ଧ ସଂଗ୍ରହ କଲେ
ବୀର ଅମାତ୍ୟ ଯୋଗୀନାଥ ଭଞ୍ଜ ମୋ ବୃନ୍ଦାବନ ଭଞ୍ଜାଦି ଥିଲେ
ସାହେବଙ୍କଠାକୁ ଲେଖିଲେ
ଦେଉଙ୍କ ଜୀବନ ବୃତ୍ତି କି ଖଞ୍ଜିଲେ ନବର୍ତ୍ତି ରହିବୁଟି ଭଲେ ।୬୨।

ଯୋଗୀନାଥ ଭଞ୍ଜ ଟଙ୍କଧର ପଟ୍ଟନାୟକ ଆସିକା ଆସିଲେ
କ୍ୟାଜଲେଟ୍ କଲକଟର ସାହେବ ପୂର୍ବରୁ ସେହିଠାରେ ଥିଲେ
ସୁଜନେ, ଦେଉଙ୍କୁ ଦେଖିବା ନିମନ୍ତେ
ପାଖ ମୁସୁଦ୍ଦିମାନଙ୍କୁ ପଠାଇଲେ ଅଶ୍ୱ ଚଢ଼ି ସେ ଦେଖା ହୋନ୍ତେ ।୬୩।

ଖର୍ଚ୍ଚକୁ ଟଙ୍କା ପାଇ କରି ସେମାନେ ସାହେବ ହଜୁରେ କହିଲେ
ବଳଭଦ୍ର ଦେଉଙ୍କୁ ଦେଖିଆସିଲୁ ଅଶ୍ୱ ଚଢ଼ି ସେ ଦେଖାହେଲେ
ସାହେବ ନିଶ୍ଚେ ସେ ବଳଭଦ୍ର ଦେଉ
ବାଳକ ଦିନେ ତ ଆମ୍ଭେ ଦେଖିଥିଲୁ ସନ୍ଦେହ ଏଥି ନାହିଁ ଅଉ ।୬୪।

ଯୋଗୀନାଥ ଭଞ୍ଜ ଟଙ୍କଧରଙ୍କୁ ଯେ ସାହେବ ପେଷଣି ଡ଼କାଇ
ସମ୍ବତ୍ସରକୁ ଷୋଳ ହଜାର ଟଙ୍କା ଦେବାକୁ ନିର୍ଣ୍ଣୟରେ କହି
ସୁଜନେ, ସେମାନେ ଶୀଘ୍ରେ ବାହୁଡ଼ିଲେ
କୁପାଟି ଗ୍ରାମରେ ତକ୍ତ କରିଥିଲେ ସେହିଠାରେ ଯାଇ ରହିଲେ ।୬୫।

ମିଥ୍ୟାକଥାରେ ଭୁଲୁଛନ୍ତି ଏ ନବାଳ ଆମ୍ଭେ ଯେ ରହିଲୁ ନବର୍ତ୍ତି
ଅମାତ୍ୟମାନେ ଯେ ଡ଼ାକ କରି କହିଲେ ତୁମ୍ଭେ ରହ ଆମ୍ଭ କତି

ତୁମ୍ଭର ରାଜ୍ୟଯାକ ଯେତେ ବସାଣ
ସାଧି କରି ନିଅ ଦେଉଙ୍କ ନାମରେ ଆଜ୍ଞା ଟେଳଖାଇ ଦେଲେ ପୁଣି । ୭୭ ।

ରାଜ୍ୟ ଯାକରୁ ଜାମିନ୍ଦାରି ବସାଣ ସାଧନ କରି ଘେନଗଲୁ ।
ଅରାଜକ ରାଜ୍ୟେ ନ ରହିବା ବୋଲି ନବଦୁରେ ଯାଇ ରହିଲୁ
ସୁଜନେ, ତ୍ରୟୋଦଶ ଛାନ୍ଦ ଏଠାରେ
ଶେଷ ହେଲା ଖେଣ୍ଡାୟୀ ପାଦ ତଳୁ ଶଆଳ କହଇ ଗୀତରେ । ୭୭ ।

---

# ଚତୁର୍ଦ୍ଦଶ ଛାନ୍ଦ

[ ରାଗ--ରାମକେରୀ ]

ଏଥୁଅନ୍ତେ ଶୁଣ ସୁଜନ ଜନେ ମନକୁ ଦେଇ
ଶ୍ରୀକର ଭଞ୍ଜ ନରବର ଭାବପୁରରେ ରହି । ୧ ।

ନିତ୍ତବସି ମାନସରେ ଯେ ଯେହ୍ନ ବିଗ୍ଭର କଲେ
କୁମ୍ଭୁନି ଘର ତ ପୁଅଙ୍କୁ ମଦରାନ୍ତେ ରଖିଲେ । ୨ ।

ଆମ୍ଭଙ୍କୁ ତ ଭାବପୁରରେ ବନ୍ଦୀ କରିଅଛନ୍ତି
ଆମ୍ଭ ଦୁହିଙ୍କଠାରୁ ଆମ୍ଭ ବଂଶ ନ ରହେ ଖଁତି । ୩ ।

ଏଠାରୁ ଆମ୍ଭେ କି ପ୍ରକାରେ ଯେବେ ପଳାଇଯିବା
ଗୁମୁସରରେ ବଳଭଦ୍ର ଭଞ୍ଜଙ୍କୁ ହିଁ ଦେଖିବା । ୪ ।

ତାଙ୍କୁ ରାଜଭକ୍ତି ଦିଆଇ ଆମ୍ଭେ ତାଙ୍କ ପାଖରେ
ରହି ସୁଖରେ ଦିନ ନେବା ଜୀଅନ୍ତା ପର୍ଯ୍ୟନ୍ତରେ । ୫ ।

ସେ ଧରକ ତାଙ୍କ ପାଖରେ ଶିଷ୍ୟ ମୋହନ ଦାସ
ଥିଲା କୃପାସିନ୍ଧୁ ନାମରେ ଗୁମୁସରେ ତା ବାସ । ୬ ।

ଗଉଡ଼ ଜଣେ ଥିଲା ଜାଣ ଜଳ ଦେବାକୁ ନିତ
ଝାଙ୍ଗଣ ଘୋଡ଼ା ଧରି ଜଣେ ପରିଡ଼ା ଥିଲା କତ । ୭ ।

ସେହିଦିନ ସହିତ ମହୁରୀ ପର୍ବତେ ମହାରଥୀ
ରହି ଫିତୁର କରୁଥିଲ ନୃପ ଜାଣି ସେ କଥା । ୮ ।

ପାଖରେ ଥିବା ଲୋକଙ୍କର ସଙ୍ଗେ ବିଗୁର କରି
ରାତିରେ ଲୁଚି କରି ଗଲେ କେବାଣ୍ଡି ଖୋଲ ଗିରି । ୯ ।

ସନ୍ଧ୍ୟାକାଳରେ ସେ ପରଡ଼ା ଟାଙ୍ଗଣ ଘୋଡ଼ା ଧରି
ଗୁମୁସରକୁ ରାତି ରାତି ଲୁଚି ଗଲ ବାହାରି । ୧୦ ।

ଆଠଦିନ ଯାଏ ରାଜନ ସେ ପର୍ବତେ ରହିଲେ
ଗୁମୁସରକୁ ଅମାତ୍ୟ ପାଖକୁ ଖବର ଦେଲେ । ୧୧ ।

ମହାବଳନ୍ଦ୍ର ବୋଲି ନାମ ତହିଁ ଅମାତ୍ୟ ଜଣେ
ପଞ୍ଚାଶ ପାଇକ ଧରି ସେ ଆସିଲ ବେଗେ ବଣେ । ୧୨ ।

ସେଠାରେ ପ୍ରବେଶ ହୋଇ ସେ ଦେଖା ନୃପ ଶ୍ରୀମୁଖରେ
ହୋଇ ନୃପତିଙ୍କି ଘେନି ସେ ଗଲ ନିଶାକାଳରେ । ୧୩ ।

ଧରାକୋଠ ବାଟେ ଯାଇଣ ଗୁମୁସରେ ପ୍ରବେଶ
ହୋଇଣ କୁପାଟି ଗ୍ରାମରେ ରହିଲେ ନରଈଶ । ୧୪ ।

ବଳଭଦ୍ର ଦେଉ ବୋଲିବା କନ୍ୟା ସେହି ସ୍ଥାନରେ
ରହିଥିଲେ ଦେଖାହେଲେ ସେ ଶୀଘ୍ରେ ନୃପ ଶ୍ରୀମୁଖରେ । ୧୫ ।

ଏ ଗୁମୁସରରେ ସାମନ୍ତ ଭଲ ଲୋକ ଯେ ଥିଲେ
ଶ୍ରୀକର ଭଞ୍ଜ ରାଜାଙ୍କର ଶ୍ରୀମୁଖରେ ଦେଖା ହେଲେ । ୧୬ ।

ସେ ସହିତ ଶାଳିବାହନ ସତରଶ ଶକାବ୍ଦ
(୧) ଚାଳିଶିଂଶ ସମ୍ବତ୍ସର ଯେ ହୋଇଥିଲାଟି ଶେଷ । ୧୭ ।

ପୂର୍ବରୁ ଯୋଗୀନାଥ ଭଞ୍ଜେ କଲକଟରଙ୍କୁ ଦେଖା
ହୋଇ ନିର୍ଣ୍ଣୟ କରିଥିଲେ ଷୋଳ ହଜାର ଟଙ୍କା । ୧୮ ।

ସେହିଦିନ ସହିତ ଅମିନମଣି ଚୌଧୁରୀ ଦ୍ୱିଜ
ହୋଇ ଗଙ୍ଗୁ ଗ୍ରାମରେ ବସା କରିଥିଲେ ସହଜ । ୧୯ ।

---

(୧) ୧୮୧୮ ଖ୍ରୀଷ୍ଟାବ୍ଦ ।

ଯୋଗୀନାଥ ଭଞ୍ଜଙ୍କୁ ନୃପ କହିଲେ ଏ ବଚନ
ତୁମ୍ଭେ ଯାଇ ରହ ଅମିନ ରହିବାର ଯେ ସ୍ଥାନ । ୨୦ ।

ଚଉଆଡ଼ି ପଟ୍ଟନାୟକଙ୍କୁ ତୁମ୍ଭେ ସଙ୍ଗରେ ନିଅ
ଷୋଳ ହଜାରକୁ କ ଦେବେ ସାହେବଙ୍କୁ ମଗାଅ । ୨୧ ।

ସମସ୍ତ ପ୍ରଧାନମାନଙ୍କୁ ଆମ୍ଭ ବିଷୟ କହି
ଖର୍ଚ୍ଚକୁ ରୁପିଆ ମଗାଇ ଦେବଟି ହେ ପଠାଇ । ୨୨ ।

ତୁମ୍ଭ ସଙ୍ଗେ ସନ୍ତୋଷରାଙ୍କୁ ନେଇଥାଅଟି ଜାଣ
ପଧାନଙ୍କୁ ସମଜାଇବ ଆମ୍ଭ ବିଷୟେ ପୁଣ । ୨୩ ।

ଏହା ଶୁଣି ନୃପ ଗ୍ରାମରୁ ମେଲାଣି ସେ ହୋଇଲେ
ଆମ୍ଭେ ମଧ୍ୟ ତାଙ୍କ ସଙ୍ଗରେ ଶୀଘ୍ରେ ଗଲୁଟି ଭଲେ । ୨୪ ।

ଗଅଙ୍ଗ ଗ୍ରାମକୁ ଯାଇଣି ବସା କରି ରହିଲୁ
ପଧାନମାନଙ୍କୁ ଡ଼କାଇ ନୃପ କଥା କହିଲୁ । ୨୫ ।

ଯାହା ପ୍ରଧାନମାନେ ଦେଲେ ତା ସନ୍ତୋଷରା ହାତେ
ପଠିଆଇ ଦେଉଥାଉ ସେ ନୃପଙ୍କର ପୁରତେ । ୨୬ ।

ଏହି ରୂପେ ଚଉମାସ ତ ରହିଲୁଟି ସେ ସ୍ଥାନେ
ଏଥୁ ଅନ୍ତରେ ଯାହା ହେଲା ତାହା ଶୁଣ ସୁଜନେ । ୨୭ ।

ଶ୍ରୀ ଶ୍ରୀକର ଭଞ୍ଜ ରାଜନ କୁପାରିରେ ତ ଥିଲେ
ଏକାଦଶୀ ଦିନ ପଡ଼ନ୍ତେ ମହାପ୍ରସାଦ ଭଲେ । ୨୮ ।

ସେବା କରୁଥିଲେ ସେ ବଳଭଦ୍ର ଭଞ୍ଜଙ୍କୁ ଡ଼ାକ
ବୋଇଲେ ଆସି ସେବା କର ରହିଅଛ କାହିଁକ । ୨୯ ।

ସେ ତ ସହଜ ବଳଭଦ୍ର ଭଞ୍ଜ ନୁହନ୍ତ ପୁଣ
ନୃପ ସଙ୍ଗରେ ସାରିବାକୁ ଭରସା ନାହିଁ ଜାଣ । ୩୦ ।

ମଜ୍ଜନ ହୋଇ ସେ ରହନ୍ତେ ନୃପ ବନ୍ଧୁ ବର୍ଗରେ
ଯେତେ ଲୋକଙ୍କୁ ପଶ୍ଚରନ୍ତେ ସେମାନେ ନ କହିଲେ । ୩୧ ।

ପୂର୍ବର ବଳଭଦ୍ର ଭଞ୍ଜ ନୁହନ୍ତି ଏ ବଚନ
ବ୍ରାହ୍ମଣ ନାଥାଦ୍ୱ କହନ୍ତ ତାଙ୍କୁ ହାଣିଲେ ଜାଣ ।୩୨।

ଏ ସକାଶରୁ ସେ ବଷୟେ କେହ୍ନିଟି ନ କହିଲେ
ଶୁଣ ସୁଜନେ ଏଥୁ ଉତ୍ତାରୁ ଯାହା ହୋଇଲା ଉଲେ ।୩୩।

ସେହ୍ୱଦନଠାରୁ ତାଙ୍କର ଥିବା ସଙ୍କେତମାନ
ଅନୁମାନ କରନ୍ତି ନୃପ ବର୍ଗର କଲେ ମନ ।୩୪।

ସର୍ବ ସ୍ଥାପି ଏ ଧନଞ୍ଜୟ ଭଞ୍ଜଙ୍କ ନୋହେ ସୁତ
ସ୍ତ୍ରିଶି ପିଲ ହସ୍ତେ ଅଟଇ ବୁଝାଯାଏ ସାକ୍ଷାତ ।୩୫।

ସାହେବଙ୍କଠାକୁ ଅରଜ ଖବରରେ ଲେଖିଲେ
ଆମ୍ଭଙ୍କୁ କାରଯୀମାନଙ୍କୁ ସଭରେ ଡ଼କାଇଲେ ।୩୬।

ଭଲ ଲୋକ କାର୍ଯୀମାନଙ୍କୁ ନୃପ କହିଲେ ବାଣୀ
ଯୋଗୀ ଭଞ୍ଜ ଅମାତ୍ୟଙ୍କର କଥା ନାହିଁ କ ଜାଣି ।୩୭।

ସ୍ତ୍ରିଶି ପିଲକୁ ବଳଭଦ୍ର ଭଞ୍ଜ ବୋଲି କହିଲେ
କଲକତ୍ତ୍ର ଆଦ୍ୱ ସାହେବମାନଙ୍କୁ ଜଣାଇଲେ ।୩୮।

ତାଙ୍କ ନାମରେ ତ ନିଶ୍ଚୟ ଷୋଳ ହଜାର ଟଙ୍କା
କରୁଅଛନ୍ତି ମାନସରେ କଲେ ନକର ଶଙ୍କା ।୩୯।

ଚତୁର୍ଦ୍ଦଶ ଛାନ୍ଦ ଏଠାରେ ଶୁଭେ ହୋଇଲା ଶେଷ
ଶେଷସାୟି ପଦ ଚିନ୍ତ ତ୍ୟାଜ ମାନସ ଦୋଷ

ଶ୍ରୀ ନାରାୟଣାୟ ନମଃ

---

ବ୍ରହ୍ମପୁର, ସ୍ୱାଧୀନ ପ୍ରେସ୍‌ରେ ମୁଦ୍ରିତ, ୧୯୬୩।—୧୦୦୦

ପ୍ରାପ୍ତିସ୍ଥାନ—

★ ଓଡ଼ିଶା ବୁକ୍ ହାଉସ୍
ବ୍ରହ୍ମପୁର (ଗଞ୍ଜାମ)

★ ବାସୁଦେବ ମନ୍ଦିର
ଭଞ୍ଜ ସାହିତ୍ୟ ପ୍ରଚାର ସମିତି
କାବନପୁର (ଗଞ୍ଜାମ)